# ହୀରାଖଣ୍ଡ

କବିଚନ୍ଦ୍ର
କାଳୀ ଚରଣ ପଟ୍ଟନାୟକ
ନାଟ୍ୟାଗ୍ରୟଂ

ସାଥୀମହଲ

ପ୍ରକାଶକ :

ଶ୍ରୀ ରାଧାଶ୍ୟାମ ମହାନ୍ତି

ସାଥୀ ମହଲ

ବିନୋଦ ବିହାରୀ, କଟକ—୨



ଅଭିନବ ପ୍ରକାଶ

୧୯୬୮



ମୁଦ୍ରାକର :

ବାଗ୍‌ଦେବୀ ପ୍ରେସ

ଜଗନ୍ନାଥ ବଲ୍ଲଭ

କଟକ—୨



ମୂଲ୍ୟ—ଦୁଇଟଙ୍କା ପଚିଶ ପଇସା

## ପଦେ କହୁଛି—

ଆମର ନଥିଲା କଅଣ ? ଶିଳ୍ପ ଥିଲା—ସାହିତ୍ୟ ଥିଲା—ସଙ୍ଗୀତ ଥିଲା—ଧନ ଥିଲା—ମନ ଥିଲା—ଏମିତିକ ଆମ ଦେଶ ଥିଲା ଉତ୍କଳ-କଳା ।

ହୀରାଖଣ୍ଡ ଆମର ହୀରାଖଣ୍ଡର ଭୂଇଁ । ଆଜ ସିନା ନାଆଁ ବଦଳି ଯାଉଛି—ହୁଏତ କେତେକାଳପରେ 'ହୀରାଖଣ୍ଡ' ଏ ନାଆଁ ବି ଲୋକେ ପାଶୋରି ପକାଇବେ । ହେଲେ ଏଇଠି,—ଏଇ ମହାନଦୀ ଆମକୁ କୁବେର କରିଥିଲା, ସେଇ ପୁଣି କଲା ନିଧନ । ଅବସ୍ଥା ବୁଝି ବରଷର ମହାନଦୀରେ ସେଇ ହୀରାଖଣ୍ଡଠାରେ ତିଆରି ହେଲା ହୀରାକୁଦ ବନ୍ଧ । ସେଇ କାର୍ତ୍ତି ଠିକେଠିକେ ବଖାଣିଛି ମୁଁ ଏ ନାଟକରେ ।

ଛପି ରହିଥିଲା—ଛପାଇବାକୁ ମନକଲେ ସାଥୀମହଲର ମାଲିକ ଶ୍ରୀ ରାଧାଶ୍ୟାମ ମହାନ୍ତି । ସାଧୁବାଦ ଦେଉଛି ତାଙ୍କୁ ।

ଚିତାଲାଗି ଅମାବାସ୍ୟା

୧୩୭୫

୨୫ । ୭ । ୬୮

[signature]

# ରଙ୍ଗ-ପରିଚୟ—

## ଅଭିନେତା—

ସାଧବପୁଅ ଓ ଜାମାତା

ସାଧବ, ସାଧବଙ୍କ ସମ୍ବନ୍ଧୀ, ଗ୍ରାମବାସୀ, ବୃଷୀ, କର୍ମୀ, ନାଉରୀଆ, ବାଳକାଠି ଗ୍ରାମର ବେପାରୀ ଓ ତାଙ୍କ ପଡ଼ୋଶୀ, ବକ୍ତା ଓ କୁଲିମାନେ······

## ଅଭିନେତ୍ରୀ—

ସାଧବାଣୀ, ସାଧବଝିଅ ଓ ବୋହୂ, ବାଳକାଠୀ ବେପାରୀ ପତ୍ନୀ, ଗ୍ରାମ-ରମଣୀ······

## ନୃତ୍ୟାଂଶରେ—

କେଳା କେଳୁଣୀ ଓ ଅନ୍ୟାନ୍ୟ କୁଳି ସ୍ତ୍ରୀ ପୁରୁଷ······

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ— ( ନଦୀ କୂଳ )

[ ଭୋର୍ ହୋଇ ଆସୁଛି । ଅଳ୍ପ ଅଳ୍ପ ଶୀତ ପଡ଼ି ଗଲଣି । ସେଦିନ କାର୍ତ୍ତିକ ପୂର୍ଣ୍ଣିମା । ଦୂର ନେପଥ୍ୟରେ ଦେବମନ୍ଦିରରୁ ପ୍ରଭାତ ଅବକାଶର ଘଣ୍ଟି, ଘଣ୍ଟାଧ୍ୱନି ଭାସି ଆସୁଛି । ସମ୍ବଲପୁର ମହାନଦୀ କୂଳରେ ଏକ ଦିଗରୁ ଗୋଟିଏ ବୋଇତର ମଙ୍ଗ ଦେଖା ଯାଉଛି । ବୁଢ଼ିଏ ପୁରନାରୀ ଶଙ୍ଖ ଫୁଙ୍କି, ଦୀପ ଧରି ଫୁଲମାଳ ଦେଇ ବୋଇତ ବନ୍ଦାଉଛନ୍ତି । ସାଧବ ବୋଇତ ଭିତରୁ ମାଝିମାନଙ୍କ ହାତରେ ନାନା ପ୍ରକାର ମିଷ୍ଟାନ୍ନ, ଶାଢ଼ୀ ଓ ପାଟ ଇତ୍ୟାଦି ଥାଳରେ ବୁହାଇ ଆନନ୍ଦରେ ଆସୁଛନ୍ତି । ବୋଇତ ମୁଣ୍ଡରେ ସିନ୍ଦୂର ଲେପି ହୁଳହୁଳି ଦେଇ ନାରୀମାନେ ଆରାଧନା କରୁଛନ୍ତି । ଏତିକବେଳେ ଅଦୂରରେ କୀର୍ତ୍ତନଦଳ ଆସୁଥିବାର ଦେଖାଗଲା ]

ରତ୍ନାକର : ହିଁ, ତୁମେମାନେ ଠାକୁରାଣୀଙ୍କର ଶାଢ଼ୀ, ସିନ୍ଦୂର, ପର୍‌ସାଦ୍ ଧରି ପଦେହେଲ୍ ଯ ବାହାରି । ହେଦେ,

ପିଲାମାନେ କୀର୍ତ୍ତନ କରିକରି ଆସୁଛନ୍ । ଆମେଁ ସଭିଏଁ ତାଙ୍କର ସାଙ୍ଗେ ଯିମୁଁ । ମହାପ୍ରୁରୁ ଦର୍ଶନ୍ କରି ଘରେ ପହଞ୍ଚ୍‌ମୁଁ । ମାଇଝିମାନେ ପୂଜାସରଞ୍ଜାମ୍ ଧରି ତୁମର୍ ସାଙ୍ଗେ ଯାଉନ୍ ।

ସାଧବାଣୀ : ହଁ, ଜଲ୍‌ଦି ଚଲେଇ ଆସ । ମୁଇଁ ଠାକ୍‌ରମାଙ୍କର୍ ମାଜ୍‌ନା ସାରି ଘର୍‌କେ ଯାଉଛେଁ । ପିଲାମାନେ କେହେନେ ଗୃତକ୍ ମିଡାନ୍ ଦେଖୁଛନ୍ ।

( ସାଧବାଣୀ ଓ ଅନ୍ୟାନ୍ୟ ସମସ୍ତେ ଗୃହଗଲେ । )

( କୀର୍ତ୍ତନ ଦଳ ଗାଇ ଗାଇ ଆସୁଛନ୍ତି )

( ଗୀତ )

ନନ୍ଦଘରେ ହେଲେ ଆଜ ସରଗର ଶଶି
ଆନନ୍ଦରେ ପୁରବାସୀ ଯାଉଛନ୍ତି ହସି ॥
କେ ବୋଲେ କୋଟି ମଦନ ମରତେ ବିଜୟ
କେ ବୋଲେ ବରଜପୁରେ ସୌଭାଗ୍ୟ ଉଦୟ ।
ସକଳ ଶୋଭାକୁ ଠୁଳ କରି ବ୍ରହ୍ମା ବସି
ଗଢ଼ିଲାକି ମନେ ମନେ କାହ୍ନୁ ଶୋଭାରାଶି ।

( ଗୀତ ବନ୍ଦହେଲା )

ରାମଚନ୍ଦ୍ର : ଦଣ୍ଡବତ, ଦଣ୍ଡବତ ଭାଇ !

ଯଦୁ : ଦଣ୍ଡବତ କକା !

ଶାମ : ମଉସା ! ଓଳଗି ହଉଚି ।

ଅନ୍ୟାନ୍ୟ : ଦଣ୍ଡବତ ସାଉକାର ।

ରାମ : ବାଟରେ ଶୁଣା ଯାଇଲା ତମେ ଆଇଲଣି ବୋଲି ; ଯୋଗକୁ ତ ଆଜ କାର୍ତ୍ତିକ ପୂନେଇଁ । ସକାଳୁ ସମସ୍ତେ

ଗାଧୋଇପାଧୋଇ କାର୍ତ୍ତିକ ଯେଉଁ ଜଗନ୍ନାଥ ଗୁଡ଼ ଆଡ଼େ ବାହାରିଥିଲୁ । ମୁଁ କହୁଲି ଏକାଥରେ ରତ୍ନାକର ଭାଇଙ୍କି ପାଉଛୁଁ, ସାଙ୍ଗରେ ନେଇ ବାହାରିବା । କଅଣ ସକାଳ ମାଡ ସାରିଲଣି ?

ରତ୍ନାକର : ପାହାନ୍ତିଆ ପ'ରକେ ବୋଲକା କୁଇଲ ଲାଗଲା । ଆଷାଢ଼ରୁ ଗୁଳ ଆପାକ ମହାନଦୀରେ ପଡ଼ିଲା ସାଙ୍ଗେ ସାଙ୍ଗେ ସାତଖଣ୍ଡି କୁଶଲା ହଟେଇଥିଲ ତ ଜାଣିଛ । ଆମର୍ ତ ଇନେ ଉପର୍ ମୁଣ୍ଡେ ନଦୀ ମଟିଯାକ ଖାଲି ପାହାଡ଼ିଆ । ପାନ ପେଟ୍ ଫୁଲେଇ ଥାଉଁ ଥାଉଁ କୁଶଲା ଡଲ୍‌ମାଲ୍‌କୁ ହଟେଇ ଦେବାର୍ କଥା । ପେର୍ ଫୁଲ ଉଠିଲା ବେଲେ ବାଟ୍‌ଘାଟ୍ ଜଗି ଫିର୍‌ବାକେ ପଡ଼ିବା । ସବୁଥି ହର୍‌ବର୍ ନାଇଁ ହେଲେ ନାଇଁ ଚଲି ହୁଏ । ଚତୁର୍ମାସିଆ ବଦେଶେ କଟେଇ ନଦୀ କାର୍ତ୍ତିକା ହେଲାଦନୁ ବାଟୁ ଘାଟୁ ଯାହା ମିଲ୍‌ଲା କାର୍‌ବାର୍ କରି ତ ଫେରୁଛେଁ । ଆରୁ ମୋର୍ କଥା କା'ଣା ପଚୁରୁଛ ? ତୁମର୍ ବହୁ ଘରେ ବୋଇତ ବନ୍ଦେଇ କରି ହେଦେ ଇଛେନ୍ ଯାଉଛନ୍ । ମୁଁଇଁ କାର୍ତ୍ତିକ ସାଂଗେ ଯାଉଁଛେଁ ।

ଯଦୁ : ଏଇ ଆଡ଼ୁ ଦର୍ଶନ ସାରି ଘରକୁ ଯିବା ଚାଲ । ଭଲ୍‌ରେ ଭଲ୍‌ରେ ବେପାର୍ ବଣିଜ ଚଲାଲ ତ ?

ରତ୍ନାକର : ହଁ, ମାଁ ସମ୍ଲେଇଙ୍କର୍ ଇଚ୍ଛା । ଧାନ୍, ମୁଗ୍, ପାଟ୍ ଯାହା ଯେତେ ନେଇଥିଲି; ସବୁମାଲ୍ ସୁରୁଖୁରୁଥି

କଟିଗଲା । ଜନଷ୍ ପତର୍ ଭ ସେଥିର୍‌ଲାଗି କନ୍ଥୁ ଅନାହେଲା । ସବୁଭଲ୍ । ଇ ମହାନଦୀର୍ କୁର୍‌ପା ତ ଆମର୍ ଯାହା ଉଜୁଡ଼ । ··· ଇ ପାନଧାର୍‌କ ତ ଆମର୍ ଗଂଗାଜଲ୍ । ପବ୍‌ତର୍ ।

ରାମ : ହଉ, ଚାଲଭାଇ, ବେଳ ଗଡ଼ିଯାଉଛି । ଘରେ ବସି ସେ ବଣିଜ ବେପାର କଥା ହେବା ନାଇଁ ? ଚାଲ ।

( ପୁଣି କୀର୍ତ୍ତନ ପଦ ଧରି ସମସ୍ତେ ବାହାରିଲେ । )

—————

## ଦ୍ୱିତୀୟ ଦୃଶ୍ୟ— ( ଗ୍ରାମପଥ )

[ ଜଣେ ଗ୍ରାମ୍ୟ କୃଷୀ, ଯେପରି ବାହୁ ପଥ ଆସି, ଥକ୍କା ମଗ୍ନ ହୋଇ ବାଟ ପାଖରେ ବସିଲେ । ଗାମୁଛାରେ ଗୋଡ଼ହାତ ଝାଡ଼ି, ବଟୁଆରୁ ପାନ ବାହାର କରି ଭାଙ୍ଗି ବସିବା ବେଳେ ଅନ୍ୟ ଜଣେ ଗ୍ରାମବାସୀ ପ୍ରବେଶ କଲେ ବିପରୀତ ଦିଗରୁ । ପ୍ରଥମ ଗ୍ରାମ-ବାସୀଙ୍କ ନାମ ଧୀନବନ୍ଧୁ, ୨ୟ ଗ୍ରାମବାସୀଙ୍କ ନାମ ସଦାଶିବ । ସଦାଶିବ ଧୀନବନ୍ଧୁଙ୍କୁ ଦେଖି ପ୍ରଥମେ ସମ୍ଭାଷଣ କଲେ । ]

ସଦାଶିବ : ଆରେ, ଇଏ କିଏ ହେ ! ଧୀନବନ୍ଧୁ ଭାଇଟି ? ଏଠି ବାଟ କାନ୍ଥିଠାରେ ଧୂଳିରେ ଏମିତି ବସି ପଡ଼ିଚ କିଅଣ ?

ଧୀନବନ୍ଧୁ : ହଁ, ମଗୁଶୀର ମାସ ତ ସରିଲା । ଆଜ ପରା ସରନ୍ତି ପାଳି ଗୁରୁବାର—ମାଣ ଉଜୁଆଁ ? ଯାଇଥିଲି କିଆରୀ ମୁଣ୍ଡକୁ ଆଖୁ ଦି ଗଛ ପାଇଁ ଯେ—ହଳିଆ ପିଲାକୁ ବିଦା କରି ଦେଇ, କ୍ଷେତ ବାହୁଡ଼ାଣି ଏଠି ଟିକିଏ ଖରା ପିଠିଆ

ହୋଇ ବସିପଡ଼ିଚ୍ଛୁ । ପାନ ଖଣ୍ଡେ ଖାଇ, ନଈକୂଳକୁ ଗଡ଼ିବ । ଆସ, ଟିକିଏ ବସ । କୁଆଡ଼େ ବାହାରିଚ ତୁମେ ଯେ ଏତେ ସହଳ ?

ସଦାଶିବ : ଭଲ କଥା ତ କହିଲ । ତମେ ବଡ଼ ପାହାନ୍ତାରୁ ଉଠି ଏ ଶୀତ କାକରରେ ବାଃ ଦେଢ଼କୋଶ ହବ ବୁଲି ଆଇଲଣିଟି ? ମୋ ବେଳକୁ ଏଡ଼େ ସହଳ ହୋଇ-ଗଲ ? ଖଳା ଲିପାପୋଛା କଲେ କି ନାହିଁ, ଦେଖି ବାହାରିଚ୍ଛୁ । ମେଡ଼ି ଅନୁକୂଳ କରିବ ବୋଲି ବସିଚ୍ଛୁ ଯେ କଅଣ କଲେ କେଜାଣି । ଏ ସନ ତମ ଗାଆଁ ମାନଙ୍କରେ କ୍ଷେତ କେମିତି ହୋଇଚ୍ଛୁ ?

ଦୀନବନ୍ଧୁ : ବସ, ପାନ ଖଣ୍ଡେ ଆଗ ଖାଅ । କଥା ଭାଷା ହେବାନାଇଁ ? ଖଳା ତ ଦେଖିଯିବ, କୋଉ ଏମିତି ବେଳ ପଳେଇ ଯାଉଚ ? ଆଚ୍ଛା ସଦାଶିବ ! ସତ କହିବ— ଗଲା ସନ ତମ ସାତମାଣ କିଆରୀରୁ କେତେ ଅମଳ କଲ ?

ସଦାଶିବ : ସତ ମିଛ କଅଣ ? ମୋର ଆମଦାନି କରିବା ବଳ କାଇଁ ? ମହାନଦୀ ସୁଦଯ୍ୟା କଲାବୋଲି ଯାହା ଯେମିତି ଭାଗ୍ୟକୁ ଫଳିଲା । ଯୋଗକୁ ଗତ ବଢ଼ିବେଳେ ପଟୁ ପକେଇ ଦେଇଗଲା । ଆଉ ଖତ ନଗାଣ ପଡ଼ ନାହିଁ । ହଁ ଫଳିଚ୍ଛୁ, କ୍ଷେତ ଟିକିଏ ଆଜି ଦୁରୁଷିଆ ହେଲାଭଳି ।

ଦୀନବନ୍ଧୁ : ଭଲ, ଭଲ, ତେବେ ତ ଜାଣି ଦ୍ୱ' ବରଷର କିଆରୀ ଉଠେଇଥିବ ତୁମେ । କଅଣ ଯୋରିଷ ହେଉଛି ଛଟା-ଛଟି କରିଛ ଧାନ ଉଠାଣି ?

ସଦାଶିବ : ହଁ, ହେଉଛ ଖୋକରାଟିଏ । ତମ ଆଖି ଖଣ୍ଡିକ ମଇଧେ ସରସ ହେଇଚ ତ, ଦେଖି ଆଇଲ । ସବୁ ତ ଏଇ ପାଣି ମୁନ୍ଦାକ । ଖରାଦିନକୁ ଢ଼ୁ ପଣା ଆଉ ବର୍ଷାଦିନକୁ ତ ଗଲା ଅମୃତ । ଆମର ଏ ଉପର ମୁଣ୍ଡର ମହାନନ୍ଦା ହେଲା ବଳ । ମହାନନ୍ଦା ନୁହେଁ ଯେ ମହାଲକ୍ଷ୍ମୀ ସେ । ହେଇଟି ଏବେ, ଏଇ ବର୍ଷ କଥା ଦେଖ । ରତ୍ନାକର ସାଉକାର ବର୍ଷାଦିନେ ବାହାରିଥିଲେ ସାତ ଖଣ୍ଡ କୋଶଳୀ ବୋଝେଇ କରି । ହାଲା କାର୍ତ୍ତିକ ପୂନଅଁ ଦିନ ବାହୁଡ଼ିଲେ । ତଉପରେ ଲାଭ ଉଠେଇଛନ୍ତି ବୋଲି ମଙ୍ଗୁଆଳେ କହୁଥିଲେ ।

ଧାନବନ୍ଧୁ : ଆହେ ସେ କଥା କାହିଁକି ପଚାରୁଛ ? ବାଣିଜ୍ୟେ ବସତେ ଲକ୍ଷ୍ମୀ-- ଯୋଉ ବଡ଼ବଡ଼େ ଏ ବଚନ କହି ଯାଇଛନ୍ତି, ସେ କଅଣ ମିଛ ? ତେହିଁକି ମହାନଦୀ ତ ଦୁଆର ବନ୍ଧରେ । ଖାଲି ନାଆ ପେଟ ବୋଝେଇ କରି ଭସେଇ ଦବାକଥା । ସବୁ ହେଲା ବୁଦ୍ଧିର ଫେର୍ ଫାର୍ । ମିଏ ପାରିଲା, କଲା । ହଁ , ଭଲ ହେବୁ ହେଲା । ତୁମେ କଅଣ୍ଟି ମୁଣ୍ଡକୁ ଯିବ ପରା ? ସୋରିଷ ଫୁଲ ଦି କେଣ୍ଡା ଆଣିଥିବ । ମାଣ ପୂଜାରେ ଲାଗିବ ।

( ଦୁହେଁ ଉଠିଲେ )

ସଦାଶିବ : ହଉ, ଏଇ କଥା ତ ? ମୁଁ ବାହୁଡ଼ାଣୀ ସୋରିଷ ଫୁଲ ତମ ଘରଟି ପହୁଞ୍ଚେଇଦେବି । (ଯାଉ ଯାଉ ଫେରି) ହଇହେ, ଧାନବନ୍ଧୁ ଭାଇ ! ତମକୁ ଟେଗୋଟେ କଥା ପଚାରିବାର ଥିଲା; ପାଶୋରି ଯାଉଛି ।

ଧାନବନ୍ଧୁ : ହଁ, କଅଣ ପଚାର ।

ସଦାଶିବ : ତମ ସାଇ ଭାଇ କଥା, କେଜାଣି ଅବା ଜାଣିଥିବ ।
କଥାଟା କଅଣ କି— ରତ୍ନାକର ସାଉକାର ତାଙ୍କ
ଝିଅଟିକି ଏ ବର୍ଷ ଉଠେଇ ଦେବେ ବୋଲି ଶୁଣୁଥିଲି ।
ଆମ ମାମୁଁ ପୁଅ ଭାଇପାଇଁ ପଡ଼ିଥିଲି ଯେ, ଦେଖା
ହେଲେ ଟିକିଏ କଥାଟା ଅଙ୍କୁରେଇ ଦେଇଥିବଟି ।
ତମର ତାଙ୍କର ତ ଭାରି ଭାବ ।

ଧାନବନ୍ଧୁ : ହିଁ ଯେ, ଆଜ ତ ଆଉ ନୁହେଁ । ଗୁରୁବାରଟା ।
କାଲି ସଞ୍ଜକୁ ଚଉପାଢ଼ୀରେ ତାଙ୍କ ଆମ ଭେଟହେବ ।
ଏଇ କଥା ତ ? ହଉ, ମତେ ଲଗିଲି ସେ କଥା ।
ଟିପଣା ସୁଝିଛୁ ଟି ?

ସଦାଶିବ : ରାଜଯୋଟକ ପରା ! ସେ ସବୁ ଆଉ କହୁ ବାଛବିଚାର
କରିବାକୁ ନାହିଁ ।

ଧାନବନ୍ଧୁ : ଆଉ ତେବେ ଅଡୁଆ କଅଣ ଅଛି ଯେ ?

ସଦାଶିବ : କିଛି ନାହିଁ । ଖାଲି କାନ୍ଧକୁ କାନ୍ଧ ଟିକିଏ ଊଣିଆ ବଣ ।
ସେ ହେଲେ ସାଉକାର ମହାଜନ— ଆଉ ଆମ
ମାମୁଁ ଜଣେ ଚାଷୀ— ଗଉନ୍ତିଆ ନାଁ ଆଉ କଅଣ ?

ଧାନବନ୍ଧୁ : (ହସି) ମ, ଏଇକଥା ? ମାଆ ଲକ୍ଷ୍ମୀ ଏବେ କୋଉ
କୋଠାରେ ଥିର ହୋଇ ରହଣି କଲେଣି କି ?
କହିଲି ପରା ମତେ ଲଗିଲି, ତୁମେ ଯା । ମାମୁଁ
ତୁମର ତ ଊଣା ନୁହନ୍ତି ।

ସଦାଶିବ : ହଉ, ହଉ; ଭାଇ । ଟିକିଏ ମନେ ରଖିବ କଥାଟାକୁ
ବାକି ।

( ଉଭୟେ ଉଭୟ ହାଗରେ ଗଲେ )

---

## ତୃତୀୟ ଦୃଶ୍ୟ—( କକ୍ଷ )

[ ରତ୍ନାକରଙ୍କ ଘର ଭିତର— ରତ୍ନାକର ଖାଇବସିଛନ୍ତି, ତାଙ୍କ ସ୍ତ୍ରୀ ବସି ପଙ୍ଖା କରୁଛନ୍ତି । ]

ରତ୍ନାକର : ( ହସି ହସି ) ବୁଝିଲ ତ, ମତେ ସତେ ଯେନ୍ତା ଗୁଟେ ଯୁଗ୍ ମିଟାନ୍ ଲାଗୁଛେ । ନଧା ଭିତ୍ରେ ଥିଲିତକ୍ ଗୁଟେ ପର୍କାର୍ । ଦଶଆ ମୁହଁକେ ମାଡ଼୍ଲା ସାଙ୍ଗେ ସାଙ୍ଗେ ଆଉର୍ ଫିର୍ ଆଏବାର୍ ଆଶା ଛୁଡ଼୍ବାର କଥା । ଏନ୍ତା ଘରଭିତ୍ରେ ଆଉର୍ ଥରେ ପିଲ୍କୁ ଟୁମ୍ଙ୍କର ସାଙ୍ଗେ ବସିକରି ଖାଏବାକେ ମନେ ବିଶ୍ୱାସ୍ ନାଇଁ ଥାଏ ।

ସାଧବାଣୀ : ଜୀବନ୍ ମୂର୍ଚ୍ଛା କଥା ତ । ଥଲ୍ନାଇଁ, କୂଲ୍ନାଇଁ, ସୁଆଡି-ବତାସ୍ । ପାନିକେ କେନ୍ ବିଶ୍ୱାସ୍ ? ଯାହା ହେବାର୍ ହେଲା । ମୁହାନ୍ ଯାକେ ପଛେ ଯା'ଆସ୍ କରୁଥ, ଆରୁ ନୁନ୍ପାନି ମାଡ଼୍ବା ଆମର୍ ଦର୍କାର୍ ନାଇଁ । ଧନ୍ କାଁ ହେବା ଯେ ? କେନ୍ ଛଅଟା ନଅଟା ହେଇଛନ୍ ଖାଏବାକେ ? ନରହରି ତ ବସିକରି ଖାଏଲେ ଭିନ୍ପୁର୍ଷା ଖାଏବେ । ଆର୍ ଝି ବୋଲି ତ ଗୁଟେ । କାଲ୍କେ ହାତ୍କେ ଦୁଇ ହାତ୍ କରିଦେଲେ ଏତ୍କେ ଆମର୍ କାମ୍ ସଏଲା ।

ରତ୍ନାକର : ଇଆଡ଼େ ଆମର୍ କାମ୍ ଯେନ୍ତା ସର୍‌ବା କଥା କହୁଛ, ସେଆଡ଼େ ଭି ସେନ୍ତା ନଦୀ କାମ୍ ସର୍‌ଲା ମିତାନ୍ ଲାଗୁଛେ । ଯାହା ଦେଖି ଆଏଲା ତଲ୍‌ମାଲ୍ ବେପାର୍ ବଣିକ୍ କଥା ଆଉ ବେଶୀ ବେଲ୍ ନାଇଁ ।

ସାଧବାଣୀ : କାଆଁ କରି ?

ରତ୍ନାକର : ମହାନଦୀ ଦନ୍‌କେଦନ୍ ପେଠେଇ ଯାଉଛେ । କେଉଁଠ୍ ନାଉରିଆମାନେ କହୁଥିଲେ ଗଲାବରଷ୍ ଡଙ୍ଗାରେ ଯେନେ ଯୁଦ୍ଧ ଆହ୍‌ଲା ଇଛେନ୍ ସେନେ କାଠ ପାଏଲାନ୍ । ପେଣ୍ଟମାନେ ସବୁ ନଦୀ'କୂଲୁ ଦୂର୍‌ଛଡ଼ା ହେଇଗଲାନ୍ । ବେଷର୍ କାର୍‌ବାର୍ ଲାଗି ବଡ଼ା ଅସୁବିଧା ହେଉଛେ । ଭିଠାରିକାନେଁ ମାଣିଆବନ୍ଧୁର୍ କାପ୍‌ଡ଼ ବୁଡ଼ା ଦାମ୍ ସାଉ ବିର୍‌ବ କୁଣେବାଠ୍ ନଦୀ-ବାଲିରେ ଗୁଲ ଗୁଲ ବହୁତ୍ କଷ୍ଟେ କପ୍‌ଡ଼ା ନେଇ ପୁହୁଞ୍ଚାଲା । ପଦୁଆଁ ବଷ୍ଣ ପେଣ୍ଟ ତ ଭାଙ୍ଗି ଆସ୍‌ଲାନ୍ । ବୈଦ୍ୟେଶ୍ୱର୍ କଥା ସେନ୍ତା ସେନ୍ତା । ତଲ୍‌ମାଲ୍ ଦେଶ୍‌ଯାକ ଦନ୍‌କେଦନ୍ ଖରପ୍ ହେଲାମେତାନ୍ ଦିଶୁଛେ । କାର୍‌ବାର୍ ଆଉ ସେନ୍ତା ବେଶୀ ନାଇଁନ ।

ସାଧବାଣୀ : ହଁ, "ଆରେ ପୂ, ଯେତେବେଲେ ଯେ," ଯାହା-ହେଲା ହେଲା, ବଏସ୍ ଥିଲା, ସବୁ କଥିକେ ପିଠେଇ-ଦେଇ ଦିନ୍ ସହିଯାଉଥିଲା । ମୁଇଁ ତମର୍ ଘର୍‌କେ ଆସ୍‌ଲାବେଲେ ତ ଦୁଇଖଣ୍ଡ୍ କୁଶ୍‌ଲାଥି ବେପାର୍ ବଣିକ୍ ଅନ୍‌କୂଲ୍ ହେଲା । ମହାଲକ୍ଷୀ ଗୃହେଁଲ ବୋଲି ଆଜି ଫେର୍ ବରଷ୍ କେତଟା ଥି ସାତ୍‌ଖଣ୍ଡ୍ ଡଙ୍ଗା । ଧନ୍ ଇଛେନ୍ ଆମର୍ ଆଉର୍ କାଣା ହେ'ବା ଯେ ?

ରତ୍ନାକର : କାଣା ହୋ, ଧନ୍ କାଣା ଖାଲି ନଜର୍ ପେଟର୍ ଲାଗି ଲୁକେ ଅର୍ଜନ୍ କର୍ସନ୍ ? ବଏସ୍ ହେଇ ଆସ୍ଲା । ଝି-ବୁଝାଟା ଉଠିଗଲେ ପିଲାର୍ଲାଗି ତ ଚନ୍ତା ନାଇଁ । ତେତ୍କେ ତୁମେ ମୁଇଁ ବସିକରି କାଣା କର୍ମା ? ମନ୍ ଆଛେ ମାହାପୁରୁ ଗୁଡ଼ଟେ କରି ଶେଷ୍କାଲ୍କେ ହରିନାମ୍ ଥି ଦନ୍ ସାର୍ବାକେ ।

ସାଧବାଣୀ : ମ, କଥା ଗପୁଁ ଗପୁଁ ସେଆଡ଼େ ହାତ୍, ମୁହଁ ବନ୍ଦ୍ ହେଲା ଯେ । ମାହାପୁରୁ ଗୁଡ଼୍ କର୍ବାକେ ଯଦି ମନ୍ କରିଛ, ସେଟା ତ ଅଧିକା କଥା । ଯେତେବେଲେ ମନ୍ କଲନ୍, ଶୁଭକାମ୍, ଇ ଫଗୁନ୍ ପୁନିଥି ଅନ୍କୁଲ୍ କରିପକାଲେ ଭଲ୍ । କଏ ଜାନିଛେ, କଏ କେତେ ଦନ୍ ?

ରତ୍ନାକର : ସତ୍ ଯେ, ହେଲେ ମୁନ୍ଷର ବଗ୍ଚର୍କେ ଦାଇବର୍ ବଗ୍ଚର୍ ସହେଲେ ସିନା ! ଝି-ବୁଝାଟା ନାଇଁ ଉଠ୍ଲା-ଯାଏଁ, କେନ୍ସି କାମ୍ଥି ଆଉର୍ ହାତ୍ ଦେଇ ନାଇଁ ହେବାକେ ।

( ସାଧବ ଝିଅ ସ୍ନେହମାଳୀ ଆସିଛି )

ସ୍ନେହ : ଆଉ କଚ୍ଛୁ ନାଇଁ ଦଅନ୍ ବାପା ? ମ ମ, କଚ୍ଛୁ ତ କାଣା ନାଇଁ ସାର୍ବାର୍ । ମାଁ ତ ବସିକରି ଖାଲି ଗପୁଥିବା । ସେ ଆର୍ କେତେବେଲେ ଖାଏବେ ?

ସାଧବାଣୀ : ତୁଇ ତ ହମ୍ ହମ୍ ହେଇ ରାନ୍ଧି ବସ୍ଲୁ । ଦାଏଲ୍ ତୁ'ନ୍ ସୁଆଦ୍ ନାଇଁ ଲାଗ୍ବାର୍ ବୋଲି ତୋ'ର୍ ବାପା କହୁଥିଲେ । ( ହସି ହସି କହିଲେ )

ସ୍ନେହ : ବାପା ! ସତେ ?

ରତ୍ନାକର : ( ହସି ) ତୋ'ର ମାଁ ଆଗ ଏନ୍ତା ସୁଆଦ୍ ତୁ'ନ୍ ରାନ୍ଧି-ଜାନ୍‌ବା ନା ? ସବୁ ଭଲ ହେଇଛେ । ତୁଇ ମାଁ'ର କଥାଅ କାଣା ପାଏବୁ ? ଯା ମାଁ, ଟିକେ ସନ୍‌ଲ ଆଣ୍ ।

ସ୍ନେହ : ମାଁ ଯେନେ ଥିବା, ହଲକ୍ ସୁଖେଇ ଦେବା ।

( ହସି ହସି ଗୁଲଗଲା )

ରତ୍ନାକର : ହଏହେ, ତୁମର୍ ମନେ ଥିବା, ଗୋପାଲ ଗାଆଁର ଗଁଅତିଆ ଘର୍ ଗଲବରଷ୍ କଥା ପକେଇଥିଲା । ପିଲାଟା ଭଲ୍ । ପୁର୍‌ନା ଡାକ୍‌ବଜା ଘର୍ । ଭଲ୍ ଜମିବାଡ଼ି ଥିବା ଲୋକ୍ । ବେଉସା-ବଣିଜ୍ ସିନା ନାଇଁନ । ହେଲେ ଭଲ୍ ଚଲ୍‌ଲା ଘର୍, ଜମିବାଡ଼ି ତ ବହୁତ୍ । ଧାନ୍ ଧରମ୍ କଣ୍ଣ ବରଷ୍‌କେ ବରଷ୍ ଝକା କଣା ଭି କର୍‌ସନ୍ । ତମର୍ ମନ୍‌କେ ଯଦି ପାଏବା, ସେନେ ଆମର୍ ସେନ ଲାଗି ନାଇଁ କର୍‌ତାଁ ?

ସାଧବାଣୀ : ହଁ, ଧନ୍ କେନେ ସବୁଦିନର୍ ? ଯୋଇଁଟା ଦେଖ୍‌ବାକେ କେନ୍ତା', କହେଲ ? ଝିଂସାଙ୍ଗ୍‌କେ ମାନ୍‌ବା ତ ?

ରତ୍ନାକର : ହଁ, ବଢ଼ିଆ ପିଲାଟେ । ଦେଖ୍‌ବାକେ ଗୁରାଗୁର ହେଇ ସୁନ୍ଦର୍ ମୁହଁ । ତୁମେ ତାକେ ଥରେ ଦେଖ । ଡାକାମାଁ କାଏଁ ?

ସାଧବାଣୀ : ଗୁଟେ କଣ୍ଣ ବାହାନା ବରି ସିନା ଡାକ୍‌ଲେ ହେବା ?

ରତ୍ନାକର : ଆମର୍ ସଦାଶିବ ଘରର୍ . ସେ ବନ୍ଧୁବାନ୍ଧବ୍ । ମୁଇଁ ଆଟଘା ବୁଝ୍‌ସି; ସେ ଆସୁ, ଦେଖ୍‌ମାଁ ।

( ସ୍ନେହ ଆସିଛି )

ସ୍ନେହ : ଦେଖିବ କାଣା ବାପା ? ତୁମେ ତ କହୁଛ ସବୁ ଭଲ୍ ହେଇଛେ ବୋଲି ।

( ସାଧବ ସାଧବାଣୀ ଦୁହେଁ ହସିଲେ । )

ସାଧବାଣୀ : ଆଲୋ ! ତୋର୍ ତୁଉନ୍ କଥା ନୁହେଁ । ସେ ଆଉର୍ ଗୁଟେ କଥା । ଦେ, ସନ୍ତୁଲି ଦେଇକରି ଯା । ନଇଆ ପାଏନ୍ ଦେଲି କି ନାଇଁ ଦେଖ୍ ।

( ସନ୍ତୁଳା ଦେଇକରି ବାହାରିଗଲା ସ୍ନେହ । )

ରତ୍ନାକର : ସତେ ! ଭଲ୍ ରାନ୍ଧିଛେ ତ !

( ସନ୍ତୁଳା ଖାଇସାରି ଉଠିଲେ । )

ସାଧବାଣୀ : ମୋର୍ ହାତୁ ଛଡ଼େଇକରି ସେନ ତ ସବୁ କରିଛେ । ଆଉ କା'ଣା ନାଇଁ ଦେଇଥିତା ହେଲେ ? ଏତ୍କି ଜଲ୍‌ଦି ସରିଗଲା ? କେନ୍ତା ଖିଆ ଇଟା ଗା ?

ରତ୍ନାକର : ନାଇଁ, ପେଟ୍ ପୂର୍‌ଲେ ପଚ୍ ତ ଖୀର୍ ଭି ଭଲ୍ ନାଇଁ-ଲାଗେ । ମୋର୍ ପେଟ୍ ଭରିଗଲା ।

ସାଧବାଣୀ : ହଁ ଗୁଲ, ପାନ ଦେସିଁ ।  ( ଉଠିଲେ )

---

## ଚତୁର୍ଥ ଦୃଶ୍ୟ—( ଅଳନ୍ଦ )

[ ବାଲକାଟି ବଜାର । ଗୋଟିଏ ଛପର ଘର ଅଗଣାରେ ଠିଆହୋଇଛୁ ସଦେଇ ନାୟକ ପିଠିରେ ଗଣ୍ଠି ଗୁଟିଏ ବାନ୍ଧ । ଅଣ୍ଟାରେ ତାର ପାନବଟୁଆ । ସେ ଗୁଗିଲ୍‌ପର ଦାଣ୍ଡିଛୁ । ଘର ଭିତରୁ ବାହୁନା କାନ୍ଦଣା ଶୁଭୁଛୁ । ]

ନେପଥ୍ୟରୁ : ଫୁଲ ପର କର ଚୈକ ମୁଁ ଥାଇଁ ଲୋ
ଶରଧା ମାଳି ।
ବୋଉ ବୋଲି ଆଉ ଡାକବୁ ନାଇଁ ଲୋ
ଶରଧା ମାଳି ।
ଗାତ ବୋପା ମାଆ ଗଲେଣି ମରି ଲୋ
ଶରଧା ମାଳି ।
ତାଙ୍କୁ ସବୁ ମନୁ ଦେ' ପାଶୋରି ଲୋ
ଶରଧା ମାଳି ।

[ ସଦେଇ ଚଉରମୂଳରେ ମୁଣ୍ଡିଆ ମାରି ଗୁଗି ଘର ଆଡ଼କୁ ଚକାଇଲା । ]

ସଦେଇ : ଏ·····ଏ·····ଛତରଖାଇ ଘର ଝିଅ ! ଆଲୋ, ଅନୁକୂଳବେଳେ ଦାନ୍ତରଡ଼ କର୍ ନା । ହଁ, ଜାଣିଥା

ଏକା କହୁଛୁ । ମୁଁ ମହା ରଗୁଆ । ଏଇଥର ଘରକୁ ମୁହାଇଁଲେ ଏକା ମୁଥକେ ତୋ ଦାନ୍ତ ଦ'ପାଟି ଭାଙ୍ଗି ଦେଇଥିବ ଯେ, ଆଉ ଏ ଶକେଇ କାନ୍ଦଣା ନ ଥିବ ଫେର୍ । ଭୁନଦ କହୁଚ । ମୁଁ ଅନୁକୂଳରେ ଯାଏଁ । ଯୋଗ ମୁହୂର୍ତ୍ତ ଭଙ୍ଗ୍ ନା ।

ଅନ୍ୟଦିଗରୁ : ସଦେଇ ଭାଇ ! ଘରେ ଅଛ ? ଓ ସଦେଇ ଭାଇ !

ସଦେଇ : କିଏ ସେ ଡାକବାର ?

ନେପଥ୍ୟରୁ : ମୁଁ ତ ଦାମ !

ସଦେଇ : କଅଣ କହୁଚୁ ? ଏଣିକ ଆ ।

[ ଦାମ ଘରକୁ ଆସି ଶୁଣିଲ କନ୍ଦଣା— ଟିକଏ ଠିଆ ହୋଇଗଲ ଭୁନ ହୋଇ । ]

ଦାମ : କଓ, ଯେ୍ତ କଅଣ ? ଘରେ କାହା କାନ୍ଦଣା ଶୁଭୁଛି ? ଗୁଟରଇ ଆସିଚ କ ?

ସଦେଇ : ନାଇଁ ରେ, ଗୁରେଇ କାହିଁକ ଆସୁଥିଲ ? ତା ମାଆ ଉଗୁର ହଉଚ ।

ଦାମ : କିଏ ଭଉଜଟି ?

ସଦେଇ : ହଁ, ହଁ ଭଉଜ-ଭଉଜ । ସେଇ କଳାହୁଣ୍ଡୀ ରକ୍ଷାସୁଣୀ ।

ଦାମ : ଯାଃ, ଏମିତି ଗୁରେ କଅଣ ଆଜି ତମ ତୁଣ୍ଡରୁ ଶୁଣୁଛି ହେ ? କଥା କଅଣ ? କାହିଁକ କାନ୍ଦୁଛନ୍ତ ସେ ଏମେତେ ? ( ଘରଆଡ଼କୁ ଯାଇ ) ଭଉଜ ! ଭଉଜ ! କାନ୍ଦଣା ଟିକଏ ବନ୍ଦ କର । କଥାଟା କଅଣ ଶୁଣେଁ ।

( ଖାଲି ଶୁଁ ଶୁଁ ଶୁଭିଲ, ବାହୁନା ବନ୍ଦ ହୋଇଯାଇ ) ମଲ୍, ଫେର୍ ତ ସେଇ ଶୁଁ ଶୁଁ— ନାକ କାନ୍ଦଣା ଗଲ୍ ନାଇଁ । ଆହେ ଭୁନ ହ । ଆଇଲ ଯୁାଡ଼କୁ !

(ଆସିଲେ ନାହିଁ କେହି) କଉଠି ଆସ, ଅଗଣାକୁ ଆସ ।
କାହିଁକି କାନ୍ଦଣ, ଶୁଣେଁ ।

ସଦେଇ : ଆଉ ଶୁଣେଁ ? ପୋଡ଼ାମୁହିଁର ମୁହଁ ଅଛି ଯେ ପଦାକୁ ଆସିବ ?

ସଦେଇ-ସ୍ତ୍ରୀ : କାହିଁକି ? ମୁହଁଟା ଏକା ତମର ଅଛି ? ମୋ ମୁହଁରେ କଅଣ ନିଆଁ ନାଗିଯାଇଛି ?

ଦାମ : ହଉ, ଏଠିକି ଆସ । କହନା କଥାଟା । ଘର କରି ଏମିତି କଅଣ କାଇଲି-କସୁର କାହାର ହୁଏ ନାହିଁ ? ବୁଝିବା କାହାର ଦୋଷ, କଥାଟା କହିଲେ ସିନା !

ସ୍ତ୍ରୀ : ହଉ ପଡ଼ିଲାଣି ତ କଥା । ଆଉ ତ କେହି ନୁହଁ, ଦାମ ତ ଦିଅର । ଶୁଣନ୍ତୁ ସେ । ( ପ୍ରବେଶ କଲେ । )

ସଦେଇ : ( ପିଠିର ଗଣ୍ଡିରି ଫିଟାଇ ଦୁମ୍ କରି ତଳେ କଚାଡ଼ି ) ହଉ, ନ ହେଲା ଏବେ ମୋ'ର ଆଜି ଏ ପାଲିକି ହାଟ । ଦେ କହ । ଧରମ ମୁହଁକୁ ମାରୁଚି । ତୋ'ରଆଉ ସତଟା ଏବେ ବାହାରୁ ।

ସ୍ତ୍ରୀ : କଅଣ କି ? ମୁଣ୍ଡ ଉପରେ ସାବତଘୀ ଉଆଁସ । କିଛି ଛଅଟା ନଅଟା ନୁହଁ, ଗୋଟିଏ ବୋଲି ତ ଝିଅ । ଘରଟିଏ ତ ଦବାକୁ ପଡ଼ିବ ।

ସଦେଇ : ପଡ଼ୁ । ଦିଅ । ଦବାକୁ ମୁଁ କଅଣ ମନା କଲି ?

ଦାମ : କିଏ ଖଉଜ ! ଝିଇ ତ ଘର ପଠେଇବାକୁ ରାଜି । ଆଉ କଲି କାହିଁକି ?

ସଦେଇ : ଆରେ ଦାମ, ଘରଟିଏ କି ଝନ ଘର ? ପଚାରିଲୁ ତୁ । ମୁଁ କିଛି କହୁନାହିଁ । ସେଇ କହୁ ।

ଦାମ : କଅଣ କହୁନା ଭଉଜ !

ସ୍ତ୍ରୀ : ଆହେ, କହିବ କଅଣ ? ତମର ତ ସାନ ବଡ଼ରେ ଖୋଟିଏ ସାଙ୍ଗ ଘର । ଅବଇଶ ହାଠ ପଲକେ ଶଏ ପଚିଶର ବେଭାର ବଣିଜ କରୁଚ । ଯାହା ଦବ ଫେର୍ ତ ଆଖି ଦୁରୁଷିଆ ହବାର କଥା । ନାଁ କଅଣ ?

ସଦେଇ : ହାଁ, ସେଇ କଥାଟି କହ । ଚୂଡ଼ା, ଚୂଡ଼ାମୁଆଁ ଭାରେ, ମୁଢ଼ି, ମୁଢ଼ିମୁଆଁ ଭାରେ ଆଉ ମୁଆଁ ଉଖୁଡ଼ା କର ଭାରେ । ଯୁଡ଼ା ବାହାରେ ମାଣିଆବନ୍ଧୀ ଶାଢ଼ୀ ଖଣ୍ଡେ, ଜ୍ୱାଇଁଙ୍କ ଯୋଡ଼ । ଆଉ ଶଙ୍ଖା, ସୁନ୍ଦର, ଆମ୍ବ, ପଣସ, ତାଳସଜ, ଗଲା ସେ ମାଈପୀଙ୍କ ନୁଣ୍ଟୁକୁଣ୍ଟୁ କେତେ ତ ଅଛୁ ।

ସ୍ତ୍ରୀ : ହଇଏ ଦାମ ! କଅଣ ଅଭଲ କଥା ମୁଁ କହିଲି ? ଭାର ବୋଲି ତ ଏଇତକ ! ବେଶୀ ଆଉ କଅଣ ?

ଦାମ : ନାଇଁ, ବେଶୀ ଆଉ କଅଣ ?

ସଦେଇ : ଆଁ ? ଇଏ ଆଇଲା ଆରକ ! ପର ବଳଦ ପରସିଙ୍ଗା, ନା ତାକୁ ବୁହାଉଥାଏ ନରସିଂଘା । କହିଲା ବେଶୀ ଆଉ କଅଣ ? ହାତରୁ ଗଣୁଥିଲେ ସିନା ଜାଣୁଥା'ନ୍ତୁ ! କରେ, ଆଜ କାଲ କଅଣ—ବେଳ କଅଣ···

ଦାମ : ହଁ, ତା ନୁହେଁ ଆଉ କଅଣ ?

ସ୍ତ୍ରୀ : ହଁ, କାଲବେଳ କଥା କହିଲ ଯେ, କଅଣ ସବୁଦିନ ଗୁରେ ତୁମେ ଝିଅ ଘରକୁ ବୁହାଇ ଦଉଚ କି ? କହିଲ ଦାମ ?

ଦାମ : ହଁ, ତା ନୁହେଁ କଅଣ? ବର୍ଷକେ ତ ଦିନଟାଏ । ଭଉଜ ଯାହା କହୁଛନ୍ତ, ମିଛ ନୁହେଁ ଭାଇ !

ସଦେଇ : ଆଜ ଭାଇ ଯାହା କହୁଛନ୍ତି ସେ କଥା ବିଚାର କରୁନାଁ ? ଆରେ, ଆମର ତ ହେଲା ମହାନଦୀ କୂଳିଆ କଆଁଶ । ବାପ ଗୋସେଇଁବାପେ ନଈକୂଳିଆ ଭୂଇଁ ସରସ ବୋଲି, ତାକୁ ଆଦୋର ଥିଲେ । ଏବେ ପରଙ୍ଗିଆ ଆମଠୁ କେତେ ସୁଖରେ ଅଛନ୍ତ ଦେଖିଲ । ବର୍ଷକୁ ବର୍ଷ ନଈରେ ତ ବାଲି ଡାଳ ହୋଇ ଯାଉଛି । ଆମ ଭିତ କଏ ଖାଉଥିଲା ! ଗତ ସନ ଏବେ ମୁଁ ତିନମାସ କାଳ ହାଟରୁ ଗଣ୍ଡି ବି କରି ଗୁଜର କୋହ୍ଲୁଛି । ଯାହା ତ ଗଲା—ଗଲା । ଶେଷକୁ ହେଲା ଧୋଇରେ ମୂଳପୋଛ । ଏ ବର୍ଷ ଧାନ ଛଅମାସ ଯାଏ ନ ଯାଏ । ଆରେ ଲିଆ କର, ମୁଢ଼ି କର, ଚୂଡ଼ା କର—ସବୁ ତ ସେଇ ଧାନ ପୁଞ୍ଜାକ ? ଥିଲା, ଦଉଥିଲେଁ—ନାହିଁ, ନଦବା ।

ସ୍ତ୍ରୀ : ନ ଦବା ବୋଇଲେ କି ଚଳିବ ? ଆମ ଥେଲା ନ ଥେଲା କଥା କିଏ ବୁଝୁଛି ?

ସଦେଇ : ଆଜ କେଉଁଠୁ କେତେ ଆଣିବ କାଢ଼ିଆ କରି ? ସମ୍ବଲପୁରିଆ ନାଆ ମହାଜନ ଆସିଥିଲା ଯେ, ଅବଶ୍ୟ ଠଙ୍କା ହଜାରକର ପାଟ, କାଣ୍ଟିଆ, ଗାମୁଛା ରଖିଥିଲେ କିଛି ହେଲେ ମୁନାଫା ହେଇଥାଆନ୍ତା । ଘରମାସ କାଳ ତ ସବୁ କିଣିବାକୁ ପଡ଼ିଲା । ମୋଟରେ ତିନିଶ ଠଙ୍କାର ବେଭର କଲି ନଗଦ । ଦାଇଶ ଠଙ୍କା ବସୁ କରିଛି । ଖବର ଆସିଛି—ତାଙ୍କ ଝିଅ ବାହାଘର । ଫେର ଯିବାକୁ ତ ହେବ । କିଛି ନ ହେଲେ ତାଙ୍କ ଋଣଧନ ତ ସୁଝିବାକୁ ପଡ଼ିବ । ପୁଣି ଖାଲି ହାତଟାରେ ଭଲା·········

ଦାମ : ହଁ, ସେ ଯେତେବେଳେ ମହାଜନ, ପୁଣି ବିଶ୍ୱାସରେ ଧାର ଉଧାର କାରବାର ଚଳୁଛି । ଦବାକୁ ତ ପଡ଼ିବ ମୁକର, ତାଙ୍କ କାମବେଳକୁ ।

ସଦେଇ : ମୁଁ ସେଇଆ କହୁଛି । ଦ'କୂଳ ସମ୍ଭାଳି ତ ପୁଣି ଯାହା ଯେମିତେ କରିବା । ହେଇତି ଗାମୁଛା ଖଣ୍ଡେକେତେ, ନେଇ ବାହାରିଛି ହାଟକୁ । ଏତିକିବେଳେ ଲଟଗେଇଛି ମୋ ସଙ୍ଗେ କଳି । କରେ, ଘରଠାକରେ ଝିଅଘର କାମ ଏ ସନ ଚଳେଇ ଦିଅ । ପୁଣି ଆଇନ୍ଦକୁ ହଇସତ ଥିଲେ, ଦେଖାଯିବ ।

ଦାମ : ହଁ, ତା ନୁହେଁ କଅଣ ? ହାତରେ ଧନ ଥିଲେ ତ ପୁଅ ବାହାକର ମନ । କାଳ ତ ଯାହା ହେଲାଣି– ନଈକୂଳ ବାସ ଭଙ୍ଗିଭୁଙ୍ଗି କୁଆଡ଼େ ଉଠି ଯିବାକୁ ପଡ଼ିବ । ଆମର ଏବେ ତେର ଗୁଣ୍ଠ ଭୂଇଁ ଉପରେ ଆଣ୍ଠୁଏ ବାଲି ଚଢ଼ିଯାଇଛି । ତେହ୍ନିକ ପୁଣି ଥରକୁ ଥର ଧୋଇ । ଦଶ ଦିନ ପନ୍ଦର ଦିନ ଲେଖାଁ ପାଣି ଠିଆ ହେଇ ରହୁଛି । ମୂଳରୁ ବିହନ ପଦ ଶୂନ୍ । କଅଣ କରିବା କହ ?

ସ୍ତ୍ରୀ : ମଲା, ସବୁ ଯେମିତେ ହଉଛି ଇଏ ବି ସେମିତେ ହବ । ତାଙ୍କର ହେଲା ଥିଲାଥୋଇଲା ଘର । ତିନ ଭାଇର କୁଟୁମ୍ବ । ସଭିଏଁ ପାଞ୍ଚଭରି ସାତଭରି ଆଣିଥିବେ । ଆଉ ମୋ ପିଲା ନାକକାଟିଆ ହବ ? ଗୋଟିଏ ବୋଲି ଭରି– କୋଉ ମୁହଁରେ ଭଲା ପଠେଇବ କହିଲ ?

ଦାମ : ହଁ, ତା ନୁହେଁ କଅଣ ?

ସଦେଇ : ଆରେ ସବୁଥିକ ତୁ ପୁଣି ଆଛା ତା’ ନୁହଁ କଅଣ—ତା’ ନୁହେ କଅଣ ତ କହୁଛୁରେ ? ମାଧିଆ ହେଇ ନା— ସବୁ କଥାକୁ ହୋଇ ହୋଇ । ଖାସା ନ୍ୟାୟ କରୁଛୁ ତୁ ଦାମ ! (ଉଠି) ଚାଲ୍ ଚାଲ୍, ବେଳ ଆସି ମୁଣ୍ଡ ଉପରେ ହେଲାଣି । ହାଟ ଗହଳି ଲଗି ଯିବଣି । ସେ ଦେଲା ନେଲା ବେଳ କଥା ତ ଅଛି । ହଉ, ତୁ କୁଆଡ଼େ ଆସିଥିଲୁ , କହବୁ ।

ଦାମ : ସମ୍ବଲପୁରିଆ ଗାମୁଛା ଖଣ୍ଡେ ନେଇ ଥାଆନ୍ତ ଯେ !

ସଦେଇ : ହଉ, ଘରେ ତ ଅଛି । ହାଟ ବାହୁଡ଼ାଣି ଦେବ । ଯା— ମୁଁ ଯାଏଁ । ସକାଳୁ ଆଜ କାହା ମୁହଁ ଚାହିଁଛି ଯେ, ମନଷ କାଷ୍ଟା ଉପାସରେ ରହିଲି ।

( ଗଣ୍ଠିର ବାନ୍ଧି ବାହାରିଲି ଯିବାକୁ )

ସ୍ତ୍ରୀ : ମଲା, ବେଳ ତ ଏତେ ହେଲାଣି । ତୋରାଣୀ ଟୋପେ ନେଲେ ତୁଣ୍ଡରେ ଦେଇ କରି ଯା ।

ସଦେଇ : ନାଃ, କାଲି କଜଆରେ ତ ପେଟ ପୂରିଗଲାଣି; ଖାଇବ ଆଉ ଗୁଟେ କଅଣ ? କଅଣ ତୁଉଣ ଶାଗ କରିଛୁ କରିଛ ? ସକାଳୁ ତ ଦାନ୍ତରଡ଼ରେ ଗଲି······

ଦାମ : ତେବେ ଅଖିଆରେ ଯିବ ? ମୁଁ ଯାଉଚି ଆମ ଘରେ କଅଣ ତୁଉଣ ହେଲ ସାରିଥିବ ଆଣେ ।

ସଦେଇ : ଆରେ ନାଇଁ, ଥାଉ ମ, ତେଣେ ବେଳ ଗଲାଣି । ଆଉ କି ଖିଆ ?

ସ୍ତ୍ରୀ : ( ହାତଧରି ) ମ, ଯେତୁ ଗୋଟେ କି ରୁଷାମ ! ଆସ, ମୁଁ ସକଳୁ ଶାଗ ଭଜି, ସନ୍ତୁଳା କରି ରଖି ଦେଇ ସାରିଛି । ଆସ ଆସ । ମୋ ମୁଣ୍ଡ ଖାଆଟି ।

ଦାମ : (ହସି) ଦେଖିଲ ପରା ଭାଉଜଟି ଆମର ପକ୍କା ଚତୁରୀ ! ସବୁ କଣ୍ଠଧର ସାର ଏ କଳ ପୁରାଣ ଆରମ୍ଭ କରି ଦେଇଛ କି ? ହଉ, ହଉ ଯା । ଭାଉଜ, ବାଢ଼—ମୁଁ ଆମ ଘରୁ ଭୁଜଣ ଆଣୁଚି । ତୁମେ ଖାଇ ବସ ଭାଇ !

( ଗୁଲିଗଲେ )

ସ୍ତ୍ରୀ : ( ସଦାନନ୍ଦଙ୍କ ପିଠିରୁ ଗଣ୍ଠିବା ଫିଟାଇ ହାତ ଧରି ) ଆସମ ! କେତେବେଳ ନାଗିବ ଯେ ? ଆସ, ମୁଁ ବାଢ଼ି ଦଉଚି ।

ସଦେଇ : ( ଘରକୁ ଟାଣି ହୋଇ ଯାଉ ଯାଉ ) ଥାଉ, ଥାଉ, ଭିଡ଼୍ ନା । ସେମିତି କପଡ଼ା ଭାଙ୍ଗ ଖସିଯିବ । ଭୋକ ଶୋଷ ଆଉ କଣ୍ଠୁ ନାହିଁ ମୋର । ମିଛଟାରେ ବଳଉଚୁ ସିନା !

ସ୍ତ୍ରୀ : ହଉ, ହଉ, ଆସ । ( ଦୁହେଁ ଘରକୁ ଗଲେ । )

---

## ପଞ୍ଚମ ଦୃଶ୍ୟ—

[ ରତ୍ନାକର ସାହୁକାରଙ୍କ ଘର ଆଗ— ସଜାସଜ ହୋଇଛି, ଫୁଲ ପଣୁସିଆ ଟଙ୍ଗା ହୋଇଛି— ଜଣକେତେ ମସାଲଚ ମସାଲ ଧର ଠିଆ ହୋଇଛନ୍ତି । ଭଲ ଗାଲଗ୍ନ ପଡ଼ିଛି । କେତେଜଣ ଭଦ୍ରଲୋକ ବସିଛନ୍ତି । ସମ୍ମୁଖରେ ପାନଥାଳଆ ଇତ୍ୟାଦ ଥୁଆ ହେଇଚ । ମଝିରେ ବରବେଶରେ ବସିଥିଲେ ପଧାନଙ୍କ ପୁଅ ସତ୍ୟବାନ । ଗୋଟିପୁଅ ନାଚ ହେଉଥିଲ । ]

ଗୋଟିପୁଅ ଧଳ— ( ଗୀତ )

ସଖୀରେ, ଗୃହାଁ ମଦନ ମୋହନ,
କୁଞ୍ଜେ ବଜପ୍ରେ ଆଜ ରାଧିକା ଜୀବନଧନ । ୦ ।
ମୁରଲୀ ଅଧରେ ଧର
ତିନ ଭଙ୍ଗିରେ ଉଭାର,
ଧଇର୍ଯ୍ୟ ଧରିବ କଏ ସହ୍ନ ତା ନୟନ ମୁନ । ୧ ।
କୋଟି କଳାକର ଶିରୀ
ଠୁଳ ଏ ରୂପ ମାଧୁରୀ
ଶିରେ ଦୋଳେ ବାଙ୍କ ଚୂଳ ମୟୁର ପୁଚ୍ଛ ଶୋଭନ । ୨ ।

( ନାଚ ମଝିରେ ସୁଦର୍ଶନ ନରହରିଙ୍କି ନେଇ ଆସିଛନ୍ତି । ସମସ୍ତେ ପାଟି କର ଉଠିଛନ୍ତି । )

ସମସ୍ତେ : ଆସ, ଆସ, ନରହରି । ତମେ ନ ଥିଲ ଯେ ସଭାଟା ଅସୁନ୍ଦର ଦିଶୁଥିଲା । ଆସ, ବସ ବସ ।

ସୁଦର୍ଶନ : ନାଇଁ ନାଇଁ, ସେ ବର ପାଖରେ ବସନ୍ତୁ ଯେ ଶୋଭା ପାଇବ । ଶଳା ଭଣୋଇ ଦିହେଁ ଏକାଠି ବସିଲେ ସିନା ସଭା ମାନିବ ।

ଜଣେବୁଢ଼ା : ଆରେ, ଆଜି ଯିଏ ଭଣୋଇ କାଲି ସେଇ ହେବ ଶଳା । ଖାଲି ଦିନ କେଇଟା ସିନା, ମଝିରେ ହେର୍‌-ଫେର୍‌ । ସାହୁଙ୍କ ଝିଅ ତ ଫେର୍‌ ଆସୁଛି ଆମ ରତ୍ନାକର ଘରକୁ ? ଦିନ ସାତଟା ପାଇଁ ନରହରିକ ଶଳା କରି ଦଉଚ ?

ସୁଦର୍ଶନ : ହେଲା ହେଲା, ଘଡ଼ିକ ପାଇଁ ହଉ ଏବେ । ଶଳା ତ ! ଦିହେଁ ଯୋଡ଼ିବାନ୍ଧି ବସନ୍ତୁ । ( ହସି ହସି ବସିଲେ ଓ ନରହରିଙ୍କି ବସାଇଲେ ) ହଉ ନାଚ ଚାଲୁ ।
( ପୁଣି ନାଚ ହେଲା । କିଛି ସମୟ ପରେ ପୁରୋହିତ ଆସିଛନ୍ତି । ନାଚ ବନ୍ଦ କରିବାକୁ ସଂକେତ ଦେଇ ସେ କହିଲେ । )

ପୁରୋହିତ : ଜ୍ୱାଇଁ ଟିକିଏ ଭିତର ଆଡ଼କୁ ଯିବେ । ବେଦି ଉପର କର୍ମ ବାକି ଅଛି ।

ସୁଦର୍ଶନ : ଗୋଟିଏ ରସଭଙ୍ଗା ଗୋସେଇଁଟିଏ ତୁମେ । ଯାଃ, ଜମି ଆସିଲା ବେଳକୁ ଆସି ସବୁ ଭଣ୍ଡାର କରିଦେଲ ।

ବୁଢ଼ା : ଆରେ, ନାଇଁ ରେ ନାତି । ରସଭଙ୍ଗା ନୁହି । ରସ ଯୋଡ଼ିବାକୁ ଆସିଛନ୍ତି ସେ । ଯା, ଯା, ଭିତରକୁ ଯା' ଆଗେ ।

( ରତ୍ନାକର ଆସିଲେ )

ରତ୍ନାକର : ଆପଣମାନେ ଭିତର୍‌କେ ଆସୁନ୍, ଖାଏବାକେ ଡେରି ହେଉଛେ ଯେ । ସବୁ ହେଇ ଗଲାନ୍ । ନାର୍‌ବାଲ୍‌ମାନେ ଟିକେ ବିଶ୍ରାମ୍ ନେଉନ୍ ।

ସମସ୍ତେ : ( ଉଠିଲେ ) ହଉ ।

## ବି ଶ୍ରା ମ

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ—

[ କେତେଜଣ ଗ୍ରାମବାସୀ ଓ ବଡ଼ ମହାପାତ୍ରେ ବସିଛନ୍ତି ପଧାନଙ୍କ ବାପମୁଣ୍ଡାରେ । ପଧାନଙ୍କ ଘର । ପୁରୁଣାକାଳିଆ ଖାନଦାନୀ ଘରପରି ବୋଧ ହେଉଥାଏ । ]

ବଡ଼ ମହାପାତ୍ରେ : କାଳ କଳି, କାଳ କଳି ! ଆଉ କିଛି ନୁହେ । ଧର୍ମ ଗଲା, କର୍ମ ଗଲା, ସୁରେଶ୍ୱରୀ ଭଗବତୀ ଗଙ୍ଗା ! ମାଆ ସାକ୍ଷାତ୍ ସେ । ଏତେ ଅନ୍ୟାୟ, ଅନାଚାର ସେ ସହିବ କେମିତି ହେ ?

ଶ୍ୟାମ : ମୁଁ ପରା ସେଇ କଥା କହୁଚି ଆଜ୍ଞା ! ବୁଢ଼ା ଓଳୁ ବୋଲି ମୋ କଥାକୁ ତ ଏ ଟୋକା ପିଲାଙ୍କ ଟାପରାରେ ଉଡ଼େଇ ଦେଲେ । ଆପଣ ତ ପଣ୍ଡିତ ଲୋକ । ଏବେ ଆପଣ ତାଙ୍କୁ ସବୁ ବୁଝାନ୍ତୁ । ମୋ ଜାଣିବାରେ ଗଙ୍ଗା ମାଆ କୋପେଇଛନ୍ତି । ( ସମସ୍ତେ ହସିଲେ । )

ଶ୍ୟାମ : ଦେଖୁଚ, ଦେଖୁଚ ଆଜ୍ଞା ! କଅଣ ଆଉ ଏଗୁଡ଼ାଙ୍କୁ କହିବା ? ଆମକୁ ତ ଜରଦ୍‌ଗବ ବୋଲି କହି ଏମାନେ ନାକ ଟେକିବାରେ ଅଛନ୍ତି । ହଉରେ ବାବୁ, ତୁମେ-ମାନେ ଆମପରି ଜରଦଗବ ନ ହୁଅ । କଲ୍ୟାଣ କରୁଛୁ ।

ରାମ : କଅଣ କହିଲେ ଅଜା ବୁଝିଲେ ତ ଏ ଭେଣ୍ଡି ଆମାନେ ? ଭଲ ଆଶୀର୍ବାଦ କଲେ । କହିଲେ ତାଙ୍କପରି ଜରଦ୍‌ଗବ ନ ହୁଅ । ତା' ଅର୍ଥ...... ।

ମହାପାତ୍ରେ : ଛାଡ଼, ଛାଡ଼ ଆରେ ଏ ପିଲାଏ ! ଶ୍ୟାମ ପଧାନ ବୁଢ଼ାଲୋକ । ସେ କଅଣ କହୁଚି ଶୁଣ—କାହିଁକି କହୁଚି ବୁଝ । ଖାଲି ହସିକରି କଥାଟାକୁ ଉଡ଼େଇ ଦେଲେ ହବ କି ? ହଁ, ତୁମେ କଅଣ କହୁଚ ଶ୍ୟାମ ?

ଶ୍ୟାମ : କଅଣ କି ଆଜ୍ଞା ? ହେଇ ମହାନଦୀ ତ ଅଛି; ଆମେ ତ ଏଇମିତି ସାତପୁରୁଷୀ ଘର ବାନ୍ଧି ରହିଛେଁ । ପୂର୍ବ-ପୁରୁଷେ ଆମର ଥାନ ବାଛିକରି ନଈକୂଳେ ବାସ ବାନ୍ଧିଥିଲେ । ଆମକୁ ଏବେ ଆଜି ସେଇ ନଈ ବଡ଼ ହରବରରେ ପକାଇଚି । ସେଇ ମହାନଦୀ ଦିନେ ସୁନା ମୁଣ୍ଡା ଅଜାଡ଼ୁଥିଲା । ଏବେ ସେଇ ହେଇଚି ଆମକୁ କାଳ । କାହିଁକି ?

ଜଣେ ଗ୍ରାମବାସୀ : କାହିଁକି, ତୁମେ କହୁନା !

ଶ୍ୟାମ : ମୁଁ ପରା କହିଲି, ମହାପାତ୍ର ସାଆନ୍ତ ଯାହା କହିଲେ ସେଇଆ । କାଳକୁ ଗୁହିଁ ଅଧର୍ମ ବଳି ପଡ଼ିବାରୁ ନଈରେ ଟୋପାଏ ହେଲେ ପାଣି ରହୁନାହିଁ । ସବୁ-ବେଳେ ଖାଲି ନଈ ପେଟ ଖାଁ ଖାଁ । ଦିନକୁଦିନ ଅସହ୍ୟ

ବଟେଳଇ ପଡ଼ିଲା । ହେଲଣି କଅଣ ? ଏଣିକି ଆମ୍ବ ଗଛରେ ଆମ୍ବଡ଼ା ଫଳିବ । ଏକଥା ନେଖିନିଅ ମୋଠୁଁ ।

ମହାପାତ୍ରେ : କାଳ ଅସଜ୍ଞ ହେଉଛି ସତ । ତେଣେ ଦରିଆ ମୁହଁରେ ବାଲି ପୋତି ହେଇ ଗଲାଣି । ସେ୍ତ ତ ଆମର ଉପର ପଠ । ତଳମାଳ ଅବସ୍ଥା କହିଲେ ନ ସରେ । ଦିନକୁ-ଦିନ ବାଲୁଚର ହେଇ ଯାଉଚି, ସୁନାଥାଳୀ କଆରୀ ।

ଶ୍ୟାମ : ହଁ, ସେଇଆ ପରି ! କାହିଁକି ଏ ସବୁ ହଉଚି ? ଦରିଆ କ'ଣ କାଲି କାଲି ନ ଥିଲା ? ଆଜି ତେମେ ଆମେ ନୂଆକରି କଲେଁ ? ଏଣେ ଆମର କଆରୀ ମୂଳକୁ ଟିକେ ପାଣି ନାଇଁ, ତେବେଣି ନଧାଇରେ ତଳମାଳ ମୂଳକ ଉଜାଡ଼ବସ୍ତି । ଏପଟେ ମହରଗ—ସେପଟେ କାନ୍ଦାର । ମଣିଷ କୁଆଡ଼କୁ ଯିବ କହ ? ମହାପାତ୍ରେ ଆଜ୍ଞା ! ଆଗ ପାଣି ଏବେ କାଇଁ, କହିଲ ଦେଖି ?

( ବୁଢ଼ା ପଧାନେ ଆସିଲେ )

ପଧାନେ : (ବସି) ହଁ, କଅଣ ପଡ଼ିଥିଲା ଶ୍ୟାମ । ଟିକିଏ ଟିକିଏ ବାଜୁଥିଲା ତମ କଥା ମୋ କାନରେ ଯେ······ ।

ଶ୍ୟାମ : ପଧାନେ, ପଚାରୁଥିଲି ଆଗବେଳ ପାଣି ଏବେ କାହିଁ ? ଏଥିରେ କ୍ଷେତ ମରୁଡ଼ିରେ ଯିବ ନାହିଁ ?

ପଧାନେ : ପାଣି କଅଣ ବର୍ଷୁ ନାଇଁ ବୋଲୁଚ ? ନଈରେ ବଢ଼ି ହଉଚି, ମେଘ ବର୍ଷା କରୁଚି—ସବୁ ହଉଚି । ବାକି ଅସଲ କଥା ହେଲା, ଆମ ବେଳ, କାଳକୁ ଗୁହିଁ ପାଣି ଝୋପେ ମିଳୁନାଇଁ । ନଈରେ ଢେର ପାଣି ବୋହୁ

ଯାଉଚି । ଜଳଜଳ କରି ଏଇ ଆଖିରେ ଆମେ ଗୃହିଁ ରହିଚନ୍ତେ । ବାକି ଉପାୟ କଅଣ ତା'ର ? ଆମ ଆଜ୍ଞା ଟବଳଙ୍କୁ ତ ଚୋପେ ନାଇଁ ।

ଶ୍ୟାମ : ମୋତେ ଏଥିକି କଥାଟାଏ ଦୁଶୁଚି ଯେ କହିଲେ ତ ଟୋକାଏ ବୋଲିବେ, ବୁଢ଼ା ଓଲୁଟାଏ— କଅଣ କହୁଚି ?

ପ୍ରଧାନ : ନାଇଁ ହେ ଶ୍ୟାମ, ତମ ଆମକୁ ବୟସ ହବାର ଦେଖି ଯୋଉ ଟୋକାଏ ବୁଢ଼ା ଓଲୁ ବୋଲି କହୁଛନ୍ତି, ତାଙ୍କ ଦିନକାଳ ଆସୁଚି, ସେ ବି ଦିନେ ବୁଢ଼ା ହେବେ । ତାଙ୍କ ପିଲାମାନଙ୍କଠୁ ସେ ମଧ୍ୟ ଏଇ ବୁଢ଼ା ଓଲୁ ପଦ ଶୁଣିବେ । ଆମେ ତଳ ବରଡ଼ା ହେଲୁଣି, ଉପର ବରଡ଼ା ସେ—ହସୁଛନ୍ତି । ମନ୍ତ୍ରି ମନ୍ତ୍ରିଆ ଯେ ଅଛନ୍ତି ତାଙ୍କ ଦିନକାଳ ଆସୁଚି । ତମେ କଅଣ କହୁଥିଲ କହିବଟି ।

ଶ୍ୟାମ : ଆଜ୍ଞା, ଏ କଥା ଯାହା ବୋଇଲେ ସତ । ମୁଁ କଅଣ କହୁଥିଲି କି, ଆମ ପୁରାଣ ଶାସ୍ତ୍ର କହୁଚି—ରଜା ଦୋଷରୁ ରାଜ୍ୟ ନାଶଯାଏ, ରାଜ୍ୟରେ ଅପାଳକ ହୁଏ, ଦୁର୍ଭିକ୍ଷ ପଡ଼େ । ପରଦେଶୀଏ ଆସି ଆମ ମହାଲକ୍ଷ୍ମୀଙ୍କି ବାନ୍ଧି ନେଇ ଚାଲେଣି । ଆଉ ଏକାଳ ହବ ନାଇଁ ।

ମହାପାତ୍ରେ : ଶ୍ୟାମ, ପଦେ କଥା କହିଲ ହରି ସତ ପୁଣ୍ଡୁ ।

ଶ୍ୟାମ : କଅଣ, ଖଜଣା ନେଲାବେଳକୁ ଅଚ୍ଛି, ଟିକସ ନେଲା-ବେଳକୁ ଅଚ୍ଛି । ଆମ ପ୍ରଜାକୁଳ ଆଗ ସୁଖରେ ଖାଇପିଇ ମୁଠାଏ ବଳେଇଲେ ସିନା ରାଜକର ଦବୁଁ, ସେଥିକି କି ବାଟ କରୁଚି ସରକାର ?

ପଧାନେ : ଯାହା ବୋଇଲ, ମୁଁ କହୁଥିଲି ପଚା ପାଣି କ'ଣ ନଈରେ ବୋହିଯାଉ ନାହିଁ ? ସରକାର ତ ଏତେ ବଳୁଆ ! ପାଣି ଯୋଗାଇ ଦେଉନାହିଁ ? ମଲା କଥାଗୁଡ଼ିକ ଖୋଳୁଛ ନାହିଁ ? ବୋଉ ଆମର କହେ—ମାଆଠାରୁ ଯିଏ ବେଶୀ ସୁଖପାଏ, ମାଆ ନୁହ ସିଏ ଡାହାଣୀ ।

ଶ୍ୟାମ : ଆହେ ପଧାନେ, ଅଙ୍ଗରେଜୀ ସରକାର ଥିଲା । ମାଆ ତ ନୁହଁ ସେ ? ଲେଖା ଯୋଖାରେ କି ଅବା ଡଶମର କର ଆମେ ମାଉଷୀ ବୋଲି ଡାକୁଥିଲେଁ । ଆମେ ଥେଲେ କେତେ, ମଲେ କେତେ, ଗଲେ କେତେ ? ଆଜି ତ ଆଉ ସେକାଳ ନାହିଁ । ଆମେ ଆଜି ଆମଘରର ମାଲିକ ହେଲେଁ । ଏଣିକି ଆମେ କଅଣ କରିବା !—ସେକଥା କହ । ଏଇ ଟୋକାଏ ସେ କଥା ବିଚାରୁ ନାହାନ୍ତି ? ଆଉ ଖାଲି ଆମକୁ ବୁଡ଼ାଓଲୁ ବୋଲି ଠିକଲି କରିବାରେ ଅଛନ୍ତି ।

ମହାପାତ୍ରେ : କଅଣ ସବୁ ଶୁଣା ଯାଉଥିଲା ତ ଆମ ରାଜ୍ୟ ଆମର ହବ । ସେଥିପାଇଁ ବହୁତ ସଭା ସମିତି, ଧରପଗଡ଼ ଚାଲିଲାଣି । କିଜାଣି ଆମ ଦେହାନ୍ତରେ ସତେ ଏ ଆଖି ଦେଖିବ ?

( ବସିଥିବା ଲୋକ ଭିତରୁ ଦମ କହିଲା— )

ସେ ବିଚାର ତ ପଛେ ପଡ଼ିବ ଆଜ୍ଞା, ଆଗ ଏଇନେ ଟୋକେ ପିଇ ଦଣ୍ଡେ ଖାଇ । କାଲି ଥିଲା ଆମ ଲୋକେ ଗଉଁତିଆଙ୍କ ଅମାରରୁ ଥିଲା ନ ଥିଲା ନଉଥିଲୁଁ ଦେଉଥିଲୁ— ଏଇମିତି ଖାଇ ଆସୁଛୁଁ । ଆଜି ଏବେ ସେଥିକି କି ବିଚାର ହେଉଛି ? ସେ କଥା କଅଣ ଅଛି

ଆଉ ? ସେଇ ଘର ତ ଅଛି । କାଇଁ କିଏ ଦାଅନ୍ତୁ ଦେଖିବା ।

ପଧାନେ : ସତ ଯେ ସାମ ! ଲମ୍ବ ପଣତ ସିନ ସବୁଆଡ଼କୁ ପାଏ ? ସେଦିନ ଥିଲା, ନଉଥିଲ, ଖାଉଥିଲ, ଦଉଥିଲ । ଆଜ ତ ଉପାୟ ନାହିଁ । କଣ୍ଟକାଠି ନଅ । ଖମାର ଦେଖ— ଆମକୁ ବଞ୍ଚାଅ, ତମେ ବଞ୍ଚ । ନ ହେଲେ ସରକାରଙ୍କୁ କହ ।

(ସତ୍ୟବାନ ପ୍ରବେଶ)

କରେ ପୁଅ ! ଏଡ଼େ ବେଗେ କଅଣ ବାହୁଡ଼ି ଅଇଲୁ ?

ସତ୍ୟ : ଆଉ କ'ଣ କରନ୍ତି ସେଠି ଥାଇ ? ବାଇଶିମାଣ ଚକ— ଫସଲ କଟା ହୋଇଥିଲେ ପାଞ୍ଚଦିନ ସାତଦିନ ଲାଗନ୍ତା । ସକାଳେ ତ ଗଲି, ହେଇଟି ବେଳବୁଡ଼ ନାହିଁ— ଆସୁଚ ଲେଉଟି ।

ମହାପାତ୍ରେ : କଅଣ ? କଥା କଅଣ ହେ ସତ୍ୟବାନ ବାବୁ ! ତୁମେ ତ ପାଠୁଆ ଶାଠୁଆ ପୁଅ । ଏକଥା କଅଣ କହୁଚ ?

ସତ୍ୟ : କଅଣ ଆଉ କହିବ କକେଇ ? ବାଇଶିମାଣ ଚକ ପରା ୧୦ଟା କଠାଳି ଦନ୍ତ ଗୋଟାକେ କାମ ସାରିଦେଲେ ! ଏଠି ଖଣ୍ଡେ—ସେଠି ଖଣ୍ଡେ ଫସଲ ଅଛି । ବାକି ସବୁ ଜଳ ଯାଇଚ । ଅସଲ ବେଳ୍‌ରେ ତ ମେଘ ଛୁଡ଼ିଗଲା । ପାଣି କାଇଁ ?

ପଧାନେ : ଶୁଣିଲ ତ ସଭିଏଁ ? ଏଥିରେ ମୋତେ କହୁଚ ଏବର୍ଷ କଟ୍ଟି କଟ୍ଟି ଧାନ ଉଠାଣ ଦଅ । କୋଉଠୁ ଦେବ ?

ଗଲା ସନକୁ ଏ ସନ ତ ଆହୁରି ତଣ୍ଟି ଚପିଦେଲା ପାଳକ ।
ଆଉ ମୋର ବଳ କଅଣ ଥିଲା ? ୫।୭ ଖଣ୍ଡ ଗାଆଁକୁ
ଏମିତଦେଇ ନେଇ ଆସୁଥିଲ ତ । ଖାଲି ନାଆଁକୁ ଦୁଇଶ-
ମାଣ ଜମି ମୋର ଅଛୁ ବୋଲ କହୁଚ ସିନା ? ଏବେ ମୋ
ଘରେ 'ବାରବାଟି ଗୃଷ—ନଇ ଉପାସ' ସେଇ ଅବସ୍ଥା
ହେଲାଣି ; ସେଇଥିରେ ପୁଣି ଦ' ଦଇଟି ନ୍ୟାୟ ନମିତ୍ତ
ଉଠେଇପାର ମୋ ଅଣ୍ଟା ଭଙ୍ଗିପଡ଼ୁଚ ।

ମହାପାତ୍ରେ : ରହ, ରହ, ରହ ପ୍ରଧାନେ । ଏ କଥାଟା କହୁଲ ଯେ
ମନକୁ ପାଇଲା ନାହିଁ । ଏକା କାଣ୍ଡକେ ଦ' ପକ୍ଷୀ
ମାରଲା ପର । ରତ୍ନାକର ସାଉଙ୍କ ଘରେ ଦେଲ ଯେତେ,
ନେଲ ସେତେ । ଝିଅ ଦେଲ, ଝିଅ ଆଣିଲ । ଦ'
ସମ୍ଭନ୍ଧୀଯାକ ସିଆଣିଆ ପଣ କରି ରାଇଜଯାକକୁ ଗୋଟାଏ
ହେଉକରେ ଠକଦେଲ । ଆହୁରି କଥା କହୁଚ ?

(ସମସ୍ତେ ହସି ଉଠିଲେ)

ପ୍ରଧାନେ : କ'ଣ, ଠକଦେଲୁ କଅଣ ?

ଶ୍ୟାମ : ଆଜ୍ଞା ? ସତକଥା ନୁହ ଆଜ୍ଞା କଅଣ ? ଆମ ସତ୍ୟବାନ
ବାବୁ ଯେମିତ ଘରକୁ କନ୍ୟାଟିଏ ଆଣିଲେ, ସେମିତ
ରତ୍ନାକର ସାଧବ ଘରକୁ ତମ ଝିଅଟି ବୋହୂ ହୋଇ
ଗଲା । ପାଲଟ କନ୍ୟା ହେଲା । ସାଉଘର ଝିଅ ତମ
ଘରେ, ତମଘର ଝିଅ ସାଉଘରେ ତ । କାହା ଭାଗ୍ୟରେ
ଏ ସୁଯୋଗ ମିଳେ ହେ ?

ପ୍ରଧାନେ : ହଁ, ସୁଯୋଗ ବୋଲ କହୁଚ ଯେ, ଥିଲା କଥାକୁ ସବୁ
ଦେଖାଏ । ଆମ ସମ୍ଭନ୍ଧୀ ଘର ଅବସ୍ଥା ଶୁଣିଲଣି କ ?
ସବୁଦିନେ ଦଉଥିଲା ଏ ମହାନଦୀ, ଫେର୍ ହରନେଲା

ସେ । ଆମେ କ୍ଷେତରୁ ପାଉଥିଲୁ—ସେ ବେପାରୁ ପାଉଥିଲେ । ଏପାଖେ ଆମର ଯେମିତି ମରୁଡ଼ି ଲାଗି ରହିଚ, ତଳପଟେ ଶୁଖୁଚ ବଡ଼ ବଡ଼ ନଈକୂଳିଆ ମହାଜନୀ ଗାଆଁ ସବୁ ଧୋଇରେ ପଦା ହୋଇଗଲେଣି । କଣ୍ଟିଳୋ, ପଦ୍ମାବତୀ, ବୈଦ୍ୟେଶ୍ୱର ହେଉକା କେତେ-ଖଣ୍ଡ ବଡ଼ ବଡ଼ ବେପାରୀ ଗାଆଁ ଏଇ ମହାନଦୀ ଗୃହିଦେଇ ଗଲେଣି । ତେଣେ ନଈ ପେଟଯାକ ବାଲି ଭର୍ତ୍ତି । ବର୍ଷାଦିନେ ବି ନାଆ ଚଳୁ ନାହିଁ । ସମୁଦ୍ର ଘର ଡଙ୍ଗା ଯା' ଆସ ବନ୍ଦ ହୋଇଗଲାଣି । ହରଣୀ ଖୋଲ ମଙ୍ଗୁଆଳେ କେତେ ଏବେ ଶୁଙ୍ଖିଲରେ ନାଆ ପେଲବେ ? ସମୁଦ୍ର ଆଣ୍ଠୁ ସନ୍ଧରୁ ମୁଣ୍ଡ ଟେକିବାକୁ ନାହିଁ । ଚିଲ୍କାରେ କତବନଗା ହୋଇପଡ଼ିଲେଣି ବୋଲି ଥରକୁଥର ଖବର ଆସୁଛି । ନାଆଟିଏ ତ ପୁଣି ଅଛି ?

ମହାପାତ୍ରେ : କ'ଣ ବୋଲୁଛ ? ଆମେ ତ ଏକଥା ଶୁଣି ନ ଥିଲୁଁ । ରତ୍ନାକର ସାହୁଙ୍କ ଘର ! ଉଞ୍ଚ ଯେତେ— ପୋତା ସେତେ !

ଶ୍ୟାମ : ହେଲେ କଅଣ ହବ ମହାପାତ୍ରେ, ଯେଡ଼ିକି ବାଉଁଶ ସେଡ଼ିକି ପୋଲ ପଡ଼ ? ହେଇଥବ ହେଇଥବ ।

ପଧାନେ : କେତେଦିନ ହେଲା ସମୁଦ୍ରକୁ ସଙ୍ଖୋଳିଯିବ ବୋଲି ବାହାରିଛି ଯେ ସଜଲ ହେଇପାରୁ ନାହିଁ । ତାଙ୍କ ଦିହ ଅବସ୍ଥା କଅଣ ହବଣି ଜଣା ନାହିଁ । ହଉ, (ସତ୍ୟବାନ ପ୍ରତି) ତୁ ଯା' ବାପା ! ଆଉ ଠିଆହୋଇ ଲାଭ କଅଣ ?

କ'ଣ ? ହାତ ମୁହଁ ଧୋଇ ଘରକୁ ଯାଅ । 'ଯାହା କରିବେ ସାଇଁ, ତା' ତ କାହାର ହାତରେ ନାଇଁ । ଭାବିଲେ କଅଣ ହେବ ? (ସତ୍ୟବାନ ପ୍ରସ୍ଥାନ)

ଶ୍ୟାମ : ଆଉ ତେବେ କଅଣ ଏଇନେ କରିବା କହିଲେ ? ଆମର ତ—ଚୁଉଲ୍ ପତର ଦାନା—ବାରଅଣ୍ଡିକୁ ଅନା—ଏଇ ଅବସ୍ଥା ହେଲାଣି । ତମ ଖରଡ଼ିଅ ଆମ ଭିତହାଣ୍ଡି ବୋଲି ଜାଣିଥିଲୁଁ । ଏବେ ଉପାୟ କଅଣ ?

ମହାପାତ୍ରେ : ସମସ୍ତେ ସେଇଆ—କିଏ ପଞ୍ଚ ଗୌଣୀ, କିଏ ପାଞ୍ଚ ପୌଟି ଏଇ ଆଶାରେ ତ ଆସିବା କଥା ।

ପଧାନେ : ମୋ ଆଶା ଛାଡ଼ ମହାପାତ୍ରେ । ଚାଲ, ଭାଗବତ ଘର-ଠିକ—କୋଠ ଧାନ କଅଣ ଥିବ—ଦେଖିବା । ବାଣ୍ଟିକୁଣ୍ଟି ଯାହା ହେଲେ ଖାଇପିଇ କାଳି ମହରଗ ବଞ୍ଚି ଯା' । ଆଇନ୍ଦା ମେଘକୁ ଚକାଅ—ଆଶା ତ ବୈତରଣୀ ନଦୀ ।

ମହାପାତ୍ରେ : ତା' ଛଡ଼ା ଆଉ ଗତି କଅଣ ? ନଈପାଣି ତ ନଈରେ ଗଲା । ଜମା ଥିଲେ ସିନା ଖରଚ । ଉଠ ଭାଗବତ ଘରଠିକ ।

( ସମସ୍ତେ ଉଠିଲେ )

—୫✻୫—

## ଦ୍ୱିତୀୟ ଦୃଶ୍ୟ— ( ପଥ )

[ ତକଲିରେ ସୂତା କାଟୁ କାଟୁ ଅନ୍ୟମନସ୍କ ଭାବେ ଆସି ପ୍ରବେଶ କଲେ ଯୁବକ ସଦାନନ୍ଦ, ପିନ୍ଧିଛନ୍ତି ଖଣ୍ଡିଏ ଖଦଡ଼ ଲୁଗା ଓ ଗୁଦର । ସମ୍ମୁଖ ଦିଗରୁ ତାଙ୍କର ଗୋଟିଏ ଭିଖାରୀ ଗୀତ ଗାଇଗାଇ ଆସୁଛି । ସଦାନନ୍ଦ ଭିଖାରୀକୁ ଚାହିଁ ଟିକିଏ ବିରକ୍ତି ପ୍ରକାଶ କଲି ]

ଭିଖାରୀ : ( ଗୀତ )

କି କାଳ ହେଲି ସତେ, କଳିଙ୍କ କି ଆସିଲି ହୋ ?

ଜାଅନ୍ତା ମଣିଷ ମଡ଼ାକୁ ବଳିଲି
ନଡ଼ା ବିନେ ଛଡ଼ା ହଡ଼ା ଦିଶିଲି ।
ମୁଠି ଭିଖ ଆଉ, ମୁଠି ଶାଗ ଆଉ
ନ ମିଳିଲି ପାଞ୍ଚ କୋଶ ବୁଲିଲେ
ସୁନା କଆଁରେ-ବାଲି ଚରିଗଲି
ଖଡ଼ା, ସାରୁ-ନଡ଼ା ସପନ ହେଲି ।

ସଦାନନ୍ଦ : ଆରେ ବାବୁ, ଥାଉ ଥାଉ ବନ୍ଦ କର । ଏତେବେଳେ ଏ ଗୀତ ଗାଇ ଲାଭ ନାହିଁ । ଶୋଳସମର୍ଥ ହୋଣ୍ଡି ଆଠାଏ ହୋଇ ଭିଖ ମାଗୁଚ, ଲାଜ ମାଡ଼ୁନାଇଁ ତମକୁ ? ଏତେବେଳେ କାଳ କଅଣ, ବେଳ କଅଣ ? ଘର-ଆଡ଼େ ସ୍ୱାଧୀନତାର ଡାକ ପଡ଼ୁଚି । ଏ ଗୀତ ନ ଗାଇ ଦେଶପ୍ରେମ ଗୀତ କିଛି ଗାଇଲେ ଜଣକର ହେଲେ ତ କାହାର ଉପକାର ହୁଅନ୍ତା । ଭିଖ ମାଗିବା ଅପେକ୍ଷା ଲୁଣ ମାର ଯାଉନ ? ଆଉ କିଛି ବେଉସା ତମକୁ ମିଳୁ ନାଇଁ ? ସୁତାକାଠ ।

ଭିଖାରି : ଗତର ଖଟେଇ ଖାଇବାକୁ ବେଉସା ମିଳୁଥିଲେ ବାବୁ, ବାରଦ୍ୱାର ବୁଲି ହାତ ପତାନ୍ତି କାହିଁକି ?
(ହଠାତ୍ ଆଗଆଡ଼ୁ ଆସିଲେ ରାମକୃଷ୍ଣ)

ରାମକୃଷ୍ଣ : (ହସି ଆଶ୍ଚର୍ଯ୍ୟ ହେଲାପରି) ଆରେ ସଦାନନ୍ଦ ନାଁ ? ଚିହ୍ନି ହଉନାଇଁ ତତେ ?

ଭିଖାରି : କ'ଣ ବାବୁ ! କିଛି ମିଳିବ ନାଇଁ ?

ରାମକୃଷ୍ଣ : (ଭିଖାରି ଆଡ଼କୁ ଫେରି) କଅଣ ରେ ?

ଭିଖାରି : ଆଜ୍ଞା, କିଛି ମାଗୁଥିଲି ।

ରାମ : (କିଛି ପଇସା ଦେଇ) ହଉ, ହଉ ଯା ଯା । (ଭିଖାରି ଚାଲିଗଲା ।

ରାମ : ତା'ପରେ ? ସଦାନନ୍ଦ କଅଣ କଲେଜଫଲେଜ ଛାଡ଼ି, ସେ ଚହଟଚକ୍‌କଣ ବେଶ ଛାଡ଼ି, ଇଏ ଏକ ଅଦ୍ଭୁତ ପରିବର୍ତ୍ତନ ତୋ'ର ? କେବେ ଆସିଲୁ ? କାଇଁ, ଆମ ଘରଆଡ଼େ ତ ଯାଇ ନାଇଁ ?

ସଦା : (ହସି) ଏଇ, କାଲି ତ ସଞ୍ଜବେଳେ ଆସିଲି । କଲେଜ ଛାଡ଼ିବା ପରେ ସ୍ୱଦେଶୀ ଲୁଗା ପିକେଟିଂ କରି ଛଅମାସ ସର୍କାରି ଭାତ ଡାଲି ଖାଇ; ପଅରଦିନ ଯେମିତି ଗ୍ରାମ ପାଉଛି;ଗାଁକୁ ଆସିଲି । ଖାଇପିଇ ସାରି ତମ ଘରଆଡ଼େ ବାହାରୁଛି, ବାଟରେ ଏ ବିପଦ ହାବୁଡ଼ିଲି ।

ଭୀମ : କି ବିପଦ !

ସଦା : ବିପଦ ନୁହଁ ତ କ'ଣ ? ଏଇ ଗୃହବାହା ସମର୍ଥ ଥାଇ ଯେ ଲୋକଟି ଭିଖ ମାଗୁଥିଲା; ଯାହାକୁ ତୁ ପଇସା ଦେଇ ଦେଶରେ କର୍ମକୁଣ୍ଠୀ ସଂଖ୍ୟା ବୃଦ୍ଧି କରିବାରେ ସାହାଯ୍ୟ କଲୁ...... ।

ଭୀମ : (ହସି) ଆରେ ନାଇଁ ନାଇଁ, ତାର ଅବସ୍ଥା ସେମିତି ହୋଇଛି । ନ ହେଲେ ସେ ଭିଖ ମାଗିବା ଲୋକ ନୁହଁ । ସନେଇଁ ବେହେରା ସିଏ । ରତ୍ନାକର ସାଉକାରଙ୍କ ନାଆ ବାହୁଥିଲା ଯେ ତାଙ୍କର ତ ଆଉ ନାଆ ଚଳିବାକୁ ନାଇଁ । ବେଉସା ବଣିଜ ବନ୍ଦ । ବୁଢ଼ା ତ ହାତ ବାନ୍ଧି ବସିଛନ୍ତି । ଶୁଣିଲି, ଭାରି ବେମାର । ଏଇନେ କି ଆଉ ଠିକକୁ । ଘରେ ତାଙ୍କର କାନ୍ଦ ବୋବାଳି ପଡ଼ିଛି । ରୋଜଗାରର କିଛି ବାଟ ନ ପାଇ ସନେଇଁ ଏଇ ପନ୍ଥା ଧରିଛି ।

ସଦାନନ୍ଦ : ନାଇଁ, ଏ ସିନା ଜଣକ କଥା ତୁ କହିଲୁ ? ଦେଖ୍, ଭିଖାରି ସଂଖ୍ୟା କେତେ ବଢ଼ିଗଲାଣି ! ଆଉ ବାଟ ଚଳେଇ ଦଉନାହାନ୍ତି । ଏଇକ୍ଷିଣି ଧରଣୀ ମାଆ ଯେମିତି ଖାଲି ଗୁଡ଼ାଏ ଭିଖାରି ଜନ୍ମ କରୁଛି !

ରାମ : ଧରନୀ ମାଆ ଜନ୍ମ ଦେଉଛି ବୋଲି କହନ୍ତି ସଦାନନ୍ଦ ! ଜନ ମହାନଦୀ ଜନ୍ମ କରିଛି । ଗୁଡ଼ ସେ କଥା—କହୁଚି ଆଗେ ତୋ କଥା ସବୁ । ଆମେ ତ ଗାଆଁ ରେ ରହୁଛୁଁ । ପିକେଟିଂ କେମିତି ହଉଚି,ସତ୍ୟାଗ୍ରହ କେମିତି ଚାଲିଛି, ଆମର ଆଶା କେତେଦୂର କହିଲୁ ।

ସଦା : ଆଶା ଢେର୍ । ଆଉ ବେଶିଦିନ ବି ନୁହଁ । ବେହାଗ୍ରା ଗର୍ଣ୍ଣ୍ରି ମାଇତାସଜଡ଼ା କଲେଣି ।

ରାମ : ଏଠି ଠିଆ ଠିଆରେ କଅଣ ମ ? ଆମ ଘରଆଡ଼େ ଚାଲ୍ । ଶୁଣିବା ସବୁ ।

ସଦାନନ୍ଦ : ଖାଲି ଶୁଣି ଲାଭ କଅଣ ? ଅଣ୍ଟା ଭିଡ଼ି ବାହାରିପଡ଼ ସମସ୍ତେ—ତେବେ ତ ସଂଗ୍ରାମ ସଫଳ ହେବ । ଆଉ ଖାଲି ଘରେ ବସି କବାଟ କୋଣରେ ମହାତ୍ମା ଗାନ୍ଧୀ କି ଜୟ; ଫୁସ୍‌ଫୁସ୍ କରି କାନ୍ଥ ବାଡ଼ିକୁ ଶୁଣାଇଁ ହେଲେ ଲାଭଟା କଅଣ ? କେତେଜଣ ନେତା ଆମ ଅଞ୍ଚଳକୁ ଆସିବାର ଅଛି । ମୁଁ ତୋ ଘରକୁ ଯାଉଥିଲି, ତତେ କହିବା ପାଇଁ । ଗାଆଁ ଗାଆଁ ରେ ଖବର ଦେଇ ଗୋଟାଏ ବିରାଟ ସଭାର ଆୟୋଜନ କରିବାକୁ ହେବ । ପାରିବୁ ?

ରାମ : ନିଶ୍ଚୟ ପାରିବି । ଅନ୍ତତଃ ଚେଷ୍ଟା କରିବାକୁ ତ ହେବ । ଲୋକେ ଏଇକ୍ଷିଣି ତାତି ରହିଛନ୍ତି । କ୍ଷେତ ନାଇଁ । ଫସଲ ନାଇଁ । ତା’ଉପରେ ଖଜଣା ମାଡ଼,ଘର ନିଲାମ । ହାରି ଗୁହାରି ତ କେହି ଶୁଣିବାକୁ ନାହିଁ; ଲୋକଙ୍କର ଅବସ୍ଥା କେମିତି ସୁଧୁରିବ, ସେ କଥା ତ ଏ ସରକାର ଦେଖୁ ନାଇଁ । ଆମେ ମରୁଁ କି ସରୁଁ, ତା’ର ଖଜଣାଖାନା ଠିକ୍ ଥାଉ ।

ସଦା : ସେଇ କଥା ତ ! ଈଶ୍ୱରଙ୍କୁ ଖୁବ ଧନ୍ୟବାଦ ଯେ ତମର ସବୁ ଏଇ ଚେତନା ଆସିଲାଣି । ଏଇଥିପାଇଁ ତତେ କହୁଥିଲି ଧର୍ମ ବାହାନାକରି ଗୁଡ଼ାଏ କର୍ମକୁଣ୍ଠୀ ଭିଖାରୀ ତିଆରି କର ନାହିଁ—ତିଆରି ହୁଅନ୍ତୁ ମନୁଷ୍ୟ—ଯେ ନିଜର ଦାବୀ ବାଢ଼ି ପାରିବେ । ଧକ୍କା ନ ବାଜିଲେ ଆଉଜା କବାଟ ବି ଫିଟିବ ନାହିଁ ରେ ରାମକୃଷ୍ଣ ।

ରାମ : ବେଶ୍ ତୁ ଚା' । କଅଣ କମିତି କରିବାକୁ ହେବ, ଆମ ଘରଠି ବସି ଗୋଠାଏ ବିଚାର ଠିକ୍ କରିବାକୁ ପଡ଼ିବ । ମୁଁ ଯେତେଦୂର ଜାଣେ, ମାଟିରେ ପାଗ ଏଇକ୍ଷିଣି ଠିକ ଅଛି । ବିହନ ବୁଣିଲେ ଗଜା ନଷ୍ଟପ୍ରାୟ ହେବ ।

ସଦା : ଆରେ ବାବୁ ! ଖାଲି ଗଜା ନୁହେଁ । ମେଘ କଅଣ ବର୍ଷୁ-ନାହିଁ ? ନଈପାଣି ନଈରେ ଭାସି ଯାଉଛି । ଚାଷୀ ଆମ ଏଠେଇ ବିହନ ବୁଣି ଉପର ପାଣିକି ଚାହିଁ ବସିଛି । ଠିକ୍ ଗଜା ମାରିଲାବେଳେ କଆରୀ ତେଣେ ଜଳପାଣି ପାଇଲା ନାହିଁ । ହେଲା ଗଜା ମରୁଡ଼ି । ମୂଳରୁ ବିହନ-ତକ ବି ଗଲା । ପାଣିକୁ ବନ୍ଧପକାଇ ସାଇତି ପାରିଥିଲେ ଆଉ କଅଣ ଚାଷୀ ଭୋକରେ ମରନ୍ତା ? ଆମେ ଗଜା ଦେଖିବାକୁ ଚାହୁଁ ନାହୁଁ କି ମରୁଡ଼ି ଦେଖିବାକୁ ଚାହୁଁ ନାହୁଁ । ଆମେ ଚାହୁଁଛୁ ଗଜା ଉପରେ ଗଛ, ତା ଉପରେ ଫୁଲ ଆଉ ତା ଉପରେ ଫଳ ।

ରାମ : ବାସ୍, ସେଇଆ ହବ । ଚାଲ, ତୋ'ର କଥା ହବ ।

( କାନ୍ଧରେ ହାତ ପକାଇ ନେଇଗଲା । )

—*—

## ତୃତୀୟ ଦୃଶ୍ୟ— ( କଷ )

[ ରତ୍ନାକର ସାହୁକାରଙ୍କ ଭିତର ଘର । ଘରର ଦୁଆର ମୁହଁ ଦିଶୁଛି । ଦୁଆର ବନ୍ଧକୁ ଲାଗି ଚଉଡ଼ା ବାରଣ୍ଡା । କବାଟ ଖୋଲା ରହିଛି । ଦୁଆର ବନ୍ଧ ଆଗରେ ସ୍ନେହ ଗୋଟିଏ ପିଢ଼ା ଉପରେ ବସି ଉମାର ମୁଣ୍ଡ କୁଣ୍ଡାଇ ଦେଉଚ । ବେଳ ରତରତ ହୋଇ ଆସୁଛି । ]

ଉମା : ଥାଉମ ସ୍ନେହ ନୂଆ ବୋଉ, କେତେ ଆଉ ମୁଣ୍ଡ କୁଣ୍ଡେଇ ଦଉଚ ?

ସ୍ନେହ : ବାପାଙ୍କ ଯିବା ଦିନୁ ତ ମୁଣ୍ଡରେ ତମର ପାନିଆଁ ବାଜି-ବାକୁନାହିଁ । ଆଉ କଅଣ ଜଟ ହେଲେ ଭଲ ହେବ ?

ଉମା : ସବୁ ତ ଗଲାଣି, ଆଉ କୋଉ ସୁଖ ଅଛି ? ଜଟ ହେଲେ କେତେ, ଝୋଟ ହେଲେ କେତେ ? ଚୁଟି କେରାକୁ ଆଉ କଅଣ ସତେ ଲୋଭ ଅଛି ? ଏଇ ଘର ତ ଦେଖିଛ ? ଏଇ କୋଠାରେ ତ ତମର ଜନ୍ମ ? କୋଉ କୋଣରେ କେତେ ରକମ ଜିନିଷ ପଟ ସଡ଼ି ଯାଉଥିଲା ! କାହାର ଖବର ନବାକୁ ତର ନ ଥିଲା ।

ସ୍ନେହ : ହଁ, ବୋଉ ମଲା ବେଳକୁ ମାଆ ଲକ୍ଷ୍ମୀ ତ ଭଣ୍ଡାରରୁ ଦୁଆର ମୁହଁକୁ ପା' ବଢ଼େଇ ସାରିଥିଲେ । ବାକି ବାପାଙ୍କ ବେଳକୁ ଏକାବେଳେକେ ଦାଣ୍ଡ ଦୁଆରମୁହଁ ଡେଇଁ ଗଲେ । ତେବେଣ ତ ତମ ଘରଟି ଖାଲି-ଅମାର ତଳେ ନୁଖୁରା ସଞ୍ଜ ବଳତା ଜଳୁଛି !

ଉମା : ସେଇ କଥା ପରା ? ମୁଁ ଅଲକ୍ଷଣୀ ଏ ଘରକୁ ଆସିଲା ପରେ ତ' ଦଉଡ଼ି କୋଠା ଛାରଖାର ହୋଇଗଲା ।

ସ୍ନେହ : ହଁ, ଯାହା କହିଲ ନୂଆ ବୋଉ ! କଟାଠା ଶାଢ଼ୀକି ପାଇଲା ନାହିଁ କି ପେଡ଼ିକ ପାଇଲା ନାହିଁ । ତେମେ ତ ଅଲକ୍ଷଣୀ, ଆଉ ମୁଁ କୋଉ ସୁଲକ୍ଷଣୀ ! ମୁଁ ଅବା ଯାଇ ତମ ଘର କୋଉ ଉଜ୍ଜ୍ୱଳ କରି ଦେଲି ଯେ ? ଏବେ ତମ ଭାଇ ତ ବସିଛନ୍ତି—ତମକୁ ସାଙ୍ଗରେ ନେଇ ଘରକୁ ଯିବେ । ଗଲେ ବଳେ ଦେଖିବ ନାଇଁ ?

ଉମା : ଭାଇ କୋଉ ଦିନ ଯିବେ ବୋଲି କହୁଥିଲେ ଯେ ?

ସ୍ନେହ : ନରହରି ଭାଇ କହୁଛନ୍ତି ଆଉ ଦିନ ୪।୬ ରହିବାକୁ । ରାଇଜଯାକ ତ କଅଣ ଭାରି ଗୋଳମାଳ ଲାଗିଛି । ଠାଆ ଠାଆକେ ସଭା ହଉଛି । ଏତେବେଳେ ଘର ଛାଡ଼ି ରହି ହଉଚ କୋଉଠି ? ଦେଖ ତ ଦିହେଁ କଅଣ ବଗୁର କରୁଛନ୍ତି ।

( ନେପଥ୍ୟରୁ କଥା ବାର୍ତ୍ତା ଶୁଭିଲା । ଦୁହେଁ ଧଡ଼ପଡ଼-ହୋଇ ଘର ଭିତରକୁ ପଳାଇଲେ । )

ସତ୍ୟବାନ : ( ଡାକି ଡାକି ଆସିଲେ ) ଉମା, ଉମା, କୁଆଡ଼େ ଗଲୁ କି ? ଘରେ କଅଣ କେହି ନାହାନ୍ତି ! ଘରଆଡ଼ ଶୂନଶାନ ଲାଗୁଛି ? (ପଛେ ପଛେ ପହଞ୍ଚିଲେ ନରହରି)

ନରହର : ଢଇବ ତ ସବୁ ଶୂନ୍ କରି ଦେଇଛି । ଆଉ କଅଣ ପଚାରୁଛ ସତ୍ୟବାନ୍ ବାବୁ ! ଏଇ ଘର କି ଦିନ କି ରାତି ଧୁ ଧୁ ଗରଜୁଥିଲା । ଦେଖିଛ ତ ? ଆଲୋ ଟେସ୍ନା, ଆରେ କଅଣ ଖଣ୍ଡେ ଦିଅ ମ ବସିବା । କୁଆଡ଼େ ସବୁ ଗଲ କି ? ( ଉମା ଘରଭିତରକୁ ଆସି ଖଣ୍ଡେ ଖରଡ଼ି ଆସନ ପକେଇ ଦେଇଗଲା । )

ଉମା : ବେଳବୁଡ଼ି ହେଇଯିବ । ଏକାଥରକେ ଗୋଡ଼-ହାତ ଧୋଇଆସି ଭୁଜା ଖାଇସାରି ବସନ୍ତ ନାଇଁ ?

ନରହର : (ବସୁବସୁ) ତମ ଭାଇଙ୍କି ଦିଅ । ମତେ ଭୋକ-ଶୋଷ କରୁ ନାହିଁ । (ଦୁହେଁ ବସିଲେ)

ସତ୍ୟବାନ୍ : କାହିଁକି ? ମୋ'ରି ପେଟରେ କଅଣ ଆଉ ବ୍ରହ୍ମଅଗ୍ନି ଜଳୁଛି ?

ନରହର : ଯାହାସବୁ ଦେଖିଆସିଲ ସତ୍ୟବାନ୍ ବାବୁ, ସେଥିରେ ଏଇନେ କଅଣ, ଭୋକ ଏ ଦିହକୁଯାକପାଇଁ ମରିଯାଇଛି । ବେଉସା ଗଲା, ବଣିଜ ଗଲା; ତଳମାଳରେ ମହାଜନ-ମାନଙ୍କଉପରେ ଯାହା ବା ବାକିବୁକିର ପଡ଼ିଥିଲା, ତାକୁ କୋଉ ମୁହଁରେ ଅବା ଆଦାୟ-ଅସୁଲ କରିବାକୁ ଯିବ ? ତାଙ୍କର ତ କାହାର ଚୁଲି ଥିଲେ କାହାର ଘୁଳ ନାଇଁ । ତା' ଛଡ଼ା ବିଲବାଡ଼ି ବୋଲି ଯାହାକୁ ଆଶା କରିବା, ସେ ତ ଯାହା ଫଳୁଚି, ଆଖିରେ ଦେଖି ଆସିଲେ । ଘୁଣ୍ଟିଏ ଉଞ୍ଚର ଧାନଗଛ—ଖାଲି ଅସରିଏ ପାଣିକି ଚାହିଁଥିଲା ହେ । ଜଳିପୋଡ଼ି ଘୁରିଖାରି । ଏଣେ ବଣିଜକୁ ବାହାରିବାକୁ ନଈ ତ ଶୁଖିଲା ପଡ଼ିଛି । ମନ ତ କାହିଁ ଗଛ ପଦରେ ବସୁଚି ଯାଇ । ମୁଁ ତ ବିଚାରୁଛି ବୁଢ଼ା

ଏତେବେଳେ ଋଷିଯାଇ ନାହାନ୍ତି ଯେ ରକ୍ଷା ପାଇ-ଯାଇଛନ୍ତି । ଦିନକୁ ଦିନ ଏସବୁ ଦୁଃଖ ସହିପାରନ୍ତେ ନାହିଁ ରେ ।

ସତ୍ୟବାନ୍ : ମୁଁ ଭାବୁଛି, ବୁଢ଼ା ଖାଲି ଏଇ ଅବଶୋଷରେ ଚାଲିଗଲେ ।

ଉମା : ତୁମେ ବସିରହିଲ, ନ ଖାଇ ନ ପିଇ ଏଇ ଭାବନାରେ ପକେଇଲେ ସଂସାର ଚଳିବ ନା ଘର ଭର୍ତ୍ତି ହେଇଯିବ ? ଯେତେବେଳେ ଯାହା ହବାକୁ ଥିବ, ହବ । ପଥର ପଡ଼ିଲେ ତ ସହିବା କଥା ଆମର । ଥିଲାତକ ଖାଉଥିବା; ନ ଥିଲେ ସଭିଙ୍କୁ ଯାହା, ଆମକୁ ତାହା । ଯାଅ, ମୁହଁ-ହାତ ଧୋଇଆସ—ସ୍ନେହ ନୂଆବୋଉ ଭୁଜା ବାଢ଼ୁଛନ୍ତି । (ଘରକୁ ଚାଲିଗଲା)

ସଦାନନ୍ଦ : (ବାହାରୁ ଡାକିଲା) ନରହରି ଭାଇ ଘରେ ଅଛ ?

ନରହରି : କିଏ ସଦାନନ୍ଦ କି ? ଆସ, ଭିତରକୁ ଆସ ।

ସଦାନନ୍ଦ : (ହସହସ ମୁହଁରେ ପ୍ରବେଶ କଲା—ହାତରେ ତା'ର ଖଣ୍ଡେ ଖବରକାଗଜ) ଆରେ, ତୁମେ ତ ଏଇଠି ! ଗୋଟାଏ ଖୁସି ଖବର ଦବାକୁ ଆସିଲି । ବଣିଆଁ ବେପାରିଏ ବାଟେବାଟେ ତାଙ୍କ ଘରକୁ ଲେଉଟିଲେ । ଆମ ଘର ଏଥର ଆମକୁ ସମ୍ଭାଳିବାକୁ ପଡ଼ିବ ।

ନରହରି : ଆହେ, ଏ କଥା ତ ଏମିତି କେତେ ଥର ଶୁଣାଗଲାଣି । ନ ଦେଖିଲି ଓଉ ଛଅ ପଣ୍ଡା ।

ସଦାନନ୍ଦ : (ଖବରକାଗଜ ଦେଖାଇ) ଛଅ ପଣ୍ଡା କି ପାଞ୍ଚ ପଣ୍ଡା, ନିଜ ଆଖିରେ ଦେଖ ।

ସତ୍ୟବାନ୍ : ( କାଗଜଆଡ଼କୁ ଝୁଙ୍କିଆସି ) କାଇଁ, ଦେଖେଁ ଦେଖେଁ ।

ସଦାନନ୍ଦ : ( ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ହସିହସି ) ଜୟ ମହାତ୍ମା ଗାନ୍ଧି ଙ୍କ ଜୟ ।

ନରହରି : ( ହସି ) ଏଥର ଆପଣା ଗୁଳିଆଡିଳେ ଭେକେ ମରିଲେ ବି ଦୁଃଖ ନାହିଁ ।

ସତ୍ୟବାନ୍ : କାହିଁକି ହୋ ? ଭେକେ କାହିଁକି ମରିବା ? ଘର-ଧନ ତ ଆଉ ପର ଖାଇନିବ ନାହିଁ ?

ସ୍ନେହ : (ଦୁଆର-ବନ୍ଧରେ ଆସି କହିଲା) ଭାଇ ! ଭୁଜା ବାଡ଼ି-ଦେଲଣି, ଆସ ।

ନରହରି : ଆଉ ଠାଏ, ଆଉ ଠାଏ; ସଦାନନ୍ଦ ଆସିଛୁ । ତିନି ଠାଆ ବାଡ଼୍ । ଚାଲି ଚାଲ ଭାଇ, ଭିତରକୁ ଚାଲ ।

ସତ୍ୟବାନ୍ : ନାଇଁ ନାଇଁ, ତିନି ଠାଆ କରି ବାଡ଼୍ ନାଇଁ । ଗୋଟାଏ ପତ୍ର ପକା । ଆଜି ପରା ଭାଇ ଭାଇ ସବୁ ଏକାଠି ହେଇ ଭଗାରିଙ୍କି ତଡ଼ିଛେଁ । ଆଉ ଫେର୍ ଅଲଗା ଅଲଗା କଅଣ ? ସଭିଏଁ ତ ଏକା ମାଆର ପୁଅ । ସଭିଏଁ ଏକା ଡଙ୍ଗାରେ ବସିଛେଁ (ମଝିରେ ରହି ନରହରି ଓ ସଦାନନ୍ଦ କାନ୍ଧରେ ହାତ ପକାଇ) ବୋଲ ଭାଇ, ମହାତ୍ମା ଗାନ୍ଧି ଙ୍କ ଜୟ ! ଭାରତ ମାତା ଙ୍କ ଜୟ !

(ଅଗ୍ରସର ହେଲେ)

—ଃ*ଃ—

## ଚତୁର୍ଥ ଦୃଶ୍ୟ— ( ପ୍ରାନ୍ତର )

[ ନଦୀ-ତୀରସ୍ଥ ଗୋଟିଏ ପଡ଼ିଆମଝିରେ ପତାକା ଉତ୍ତୋଳନ ଉତ୍ସବ ପ୍ରତିପାଳିତ ହେଉଛି ୧୯୪୭ ଅଗଷ୍ଟ ପନ୍ଦର ତାରିଖ ଦିନ ରାତି ୧୧ଟା ବେଳେ । ଦୃଶ୍ୟପଟ୍ଟ ଉତ୍ତୋଳିତ ହେବାବେଳକୁ ବହୁ ଲୋକସମାଗମ ଦେଖାଯାଉଅଛି । ପତାକା-ସ୍ତମ୍ଭତଳେ ଜଣେ ଖଦଡ଼ପୋଷାକ ପିନ୍ଧିଥିବା କର୍ମୀ ଦଣ୍ଡାୟମାନ ]

ଜନତା : ବନ୍ଦେ ମାତରମ୍ ।

କର୍ମୀ : ଭାଇ ଓ ଭଉଣୀମାନେ ! ଦୀର୍ଘ ଦେଢ଼ଶ ବର୍ଷରୁ ଊର୍ଦ୍ଧ୍ୱ କାଳ ଆମେମାନେ ପର ପଦାନତ ହୋଇ କାଳ କାଟିଛେଁ । ଆଜି ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ— ଆମ୍ଭମାନଙ୍କ ଭାଗ୍ୟ ପରିବର୍ତ୍ତନ ଦିବସ । ଆମର ଏ ପରିବର୍ତ୍ତନ ମୂଳରେ କେତେ ଯେ ସହିଦ ଭାଇ ନିଜର ରକ୍ତ ଢାଳିଦେଇଛନ୍ତି, ତା'ର କଳନା ନାହିଁ । ପରିଶେଷରେ ଆମ୍ଭେମାନେ ଆଜି ଯୁଦ୍ଧରେ ଜୟୀ । କିନ୍ତୁ ଏ ଯୁଦ୍ଧ ରକ୍ତପାତର ଯୁଦ୍ଧ ନୁହେଁ । ପୃଥିବୀରେ

ଏଭଳି ବିଜୟ କେବଳ ସ୍ୱାଧୀନ ଭାରତର ଜନ୍ମଦାତା ବାପୁଜୀଙ୍କ ହେତୁ ସମ୍ଭବ ହୋଇପାରିଛି । ବିଶାଳ ବ୍ରିଟିଶବାହିନୀ ଅବଲୀଳାକ୍ରମେ ହାର୍ ମାନିଛି ସେହି କେବଳ ମହାମନିଷୀଙ୍କର ନିର୍ଦ୍ଦେଶରେ । ପୃଥିବୀର ସର୍ବଶ୍ରେଷ୍ଠ ଶାନ୍ତିପ୍ରିୟ ସ୍ୱାଧୀନ ମହାମାନବ ଗାନ୍ଧିଜୀଙ୍କ ପ୍ରେରଣାବଳରେ ଆଜି ଆମର ପରପଦାନତ ଭାରତ ଜନନୀ ଶୃଙ୍ଖଳମୁକ୍ତା । ବୋଲ ଭାଇ—

ବାପୁଜୀ କୀ ଜୟ,
ମହାତ୍ମାଜୀ କୀ ଜୟ ।
ଗାନ୍ଧିଜୀ କୀ ଜୟ ।

ଜନତା : (ଉଚ୍ଚ ସ୍ୱରରେ ଉପର୍ଯ୍ୟୁକ୍ତ ବାକ୍ୟମାନ ଉଚ୍ଚାରଣ କଲା-ପରେ ଜାତୀୟ ସଂଗୀତ ଗାୟନମଧ୍ୟରେ ପତାକା ଉତ୍ତୋଳିତ ହେଲା)

କର୍ମୀ : ସ୍ୱାଧୀନ ଭାରତ କୀ—

ଜନତା : ଜୟ ।

କର୍ମୀ : (ପ୍ରଣାମ କରି) ବନ୍ଦେ—

ଜନତା : (ପ୍ରଣାମ କରି) ମାତରମ୍ ।

—ପଟ୍ଟକ୍ଷେପ—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ— ( ସଭାସ୍ଥଳୀ )

[ ସୁସଜ୍ଜିତ ସଭାମଣ୍ଡପ । ସଭାରେ ବହୁତ ଲୋକ ଏକାଠି ହୋଇଛନ୍ତି । ନେତା ବକ୍ତୃତା ଦେଉଛନ୍ତି । ଏତିକିବେଳେ ଦୃଶ୍ୟପଟ୍ଟ ଉନ୍ମୋଚିତ ହେଲା । ]

ନେତା : ମହାତ୍ମା ଗାନ୍ଧିଙ୍କ ସତ୍ୟ, ଅହିଂସା, ତ୍ୟାଗ ଓ ନିଷ୍ଠା- ବଳରେ ଆଜ ଆମ୍ଭେମାନେ ସ୍ୱାଧୀନ ପୃଥିବୀର ଅନ୍ୟାନ୍ୟ ଜାତିମାନଙ୍କ ଆଗରେ ଛାତି ଫୁଲାଇ ଠିଆହେବାର ସମୟ ଆସିଛି । କିନ୍ତୁ ଏଣେ ଦେଖିଲାବେଳକୁ ଆମର ଅନ୍ନ-ବସ୍ତ୍ରର ଅଭାବ ।

ସଭାର ଜଣେ ଲୋକ : ( ଉଠିପଡ଼ି କହିଲେ )— ଏଇ ଅଭାବ ଏଇ ସରକାର ସୃଷ୍ଟି କରିଛନ୍ତି । ଏ କଥା ଆପଣ ସ୍ୱୀକାର କରନ୍ତୁ । ( ବସିପଡ଼ିଲେ । )

ନେତା : ଅପରାଧ ସ୍ୱୀକାର କରିବାକୁ ମୁଁ ସବୁବେଳେ ପ୍ରସ୍ତୁତ; କିନ୍ତୁ ବାସ୍ତବରେ ସରକାର ଏଥିଲାଗି ଅପରାଧୀ ନୁହନ୍ତି । ଆଜିର ସରକାର କିଏ ? ଏ ସରକାର ତ ଆମେ । ଆମେମାନେ ସମୂହଭାବରେ ଏଥିପାଇଁ ଦାୟୀ । ଏ କଥା କହିବା ପୂର୍ବରୁ ମୁଁ ଏ ସଙ୍କଟ ଉପୁଜିବାର ଆହୁରି କାରଣ ମଧ୍ୟ ଦର୍ଶାଇବି ।

ସଭାଲୋକ : ନା ନା, ଏସବୁ ଶୁଣିବାକୁ ଆମେମାନେ ପ୍ରସ୍ତୁତ ନହୁଁ । ଆମର ଭାତ ଦରକାର, ଲୁଗା ଦରକାର ।

ଅନ୍ୟ ଜଣେ : ( ଉଠି ) ବକ୍ତା କଅଣ କହୁଛନ୍ତି, ଆଗେ ଶୁଣାଯାଉ; ତା'ପରେ ଆମେମାନେ ସିନା କହିବା । ସଭାର ଶିଷ୍ଟତା-ଭଙ୍ଗ ଅନୁଚିତ । ଆପଣମାନେ ନୀରବ ରହି କଥାଟା ଆଗେ ଶୁଣନ୍ତୁ, ଧୈର୍ଯ୍ୟ ଧରନ୍ତୁ ।

ସଭାଲୋକ : ହଉ ହଉ, କହନ୍ତୁ ।

ନେତା : ଆପଣମାନେ ଜାଣନ୍ତି ଆମ ଦେଶର ଲୋକସଂଖ୍ୟା ଆଗଠାରୁ ଢେର୍ ବେଶୀ ବଢ଼ିଯାଉଛି । ଯୁଗକୁ ଚାହିଁ ନାନା ରକମ ଜିନିଷର ଆବଶ୍ୟକତା ମଧ୍ୟ ବଢ଼ି ବଢ଼ି ଚାଲିଛି— କିନ୍ତୁ ଏଣେ ଚାଷ ଜମି ଯେତିକି, ସେତିକି ନ ଥାଇ ବରଂ ଆବାଦୀ ପୂର୍ବାପେକ୍ଷା ଆହୁରି ଊଣା ହୋଇ-ଯାଉଛି । ଯାହା ବା ଅଛି, ସେଥିରେ ପୁଣି ଯେଉଁ ବର୍ଷ ଗଛ ଭଲଭାବେ ବଢ଼ିବାରୁ ଚାଷୀ ଷୋହଳ ଅଣା ଫସଲ ଆଶା କରୁଛି, ତେଣେ ହୁଏତ ସେହି ବର୍ଷ ଫସଲ ଅମଳ କରି ଘରକୁ ନେବାବେଳକୁ ଆସିଲା ବନ୍ୟା । ଏ ବନ୍ୟା

ଆଗବେଳପରି ନୁହେଁ । ଏବେ ପାଣି ବହୁତ ଦିନଯାଏଁ କିଆରୀ ବୁଡ଼ାଇରଖୁଚି । ଫସଲ ନଷ୍ଟ ହେଉଚି । "ମଲା ପୁଅର ଗଳା ମୋଟ"—କଥାପରି ଭଲ ଗଛ ହୋଇ ଫସଲ ଧୋଇରେ ଯାଉଚି । ପୁଣି ଆର ବର୍ଷକୁ ଫସଲ-ପାଇଁ ପାଣି ଲୋଡ଼ିବାବେଳକୁ ମେଘ ଟୋପାଏ ପାଣି ବର୍ଷିଲା ନାହିଁ । ଆଉ ମଧ୍ୟ କିଆରୀରେ ପାଣି କେଉଁଆଡ଼ୁ ମଡ଼ାଇବାର ଉପାୟ ନାହିଁ । ଫସଲ ମରୁଡ଼ିରେ ଗଲା । ଏଇ ହେଲା ଆମ କୃଷିକୁଳର ଅବସ୍ଥା । କୃଷୀର ଖମାର—ଆମର ଭାତହାଣ୍ଡି । ସେ ଯେବେ ଭୁଷୁଡ଼ି ଗଲା, ଆଉ ଲୋକେ କଅଣ ଖାଇ ବଞ୍ଚିବେ ? ସୃଷ୍ଟି ହେବ ଦେଶ ବ୍ୟାପି ଭୟଙ୍କର ଦୁର୍ଭିକ୍ଷ । ଆପଣମାନେ ଏ କଥା କେବେ ଭାବୁଚନ୍ତିଲେଣି କି ?

ସତ୍ୟବାନ୍ : ଆଜ୍ଞା, ମୁଁ ଏ ଅଞ୍ଚଳର ଜଣେ ବଡ଼ ଚୃଷୀ । ଦୁଇ ଶହ ଏକର ଭୂଇଁ ଆମର ଅଛି । ଆଜକୁ ପଚାଶ ତିରିଶି ବର୍ଷ ପୂର୍ବେ ଏଇ ଦୁଇ ଶହ ଏକର ଜମିରୁ ଧାନ, ମୁଗ, ବିରି, ଧୂଆପତ୍ର, କପା, ସୋରିଷ, ଜଡ଼ା—ଆଉ ତା' ଛଡ଼ା ନାନା ପନପରିବା ଆଦାୟ ହେଉଥିଲା । ୫।୭ ଖଣ୍ଡ ମୌଜାର ଅଣ୍ଟ-ନଅଣ୍ଟ ଆମେ ବାନ୍ଧ ଅଧରେ ସମ୍ଭାଳି ଆସିଥିଲୁଁ । ଆମର ଅଧିକାଂଶ ଜମି ନଈକୂଳିଆ । ଏବେ କେତେକ ସେଥିରୁ ନଈ ଖାଇଗଲାଣି, କେତେ ବାଲିଚର ହୋଇଗଲାଣି—ବର୍ତ୍ତମାନକୁ ପ୍ରାୟ ମୋଟେ ଶହେ ଏକର ହେବ ଭୂଇଁରୁ ଯାହା ଆମଦାନି ହେଉଚି, ତା ମଧ୍ୟ ଆଗବେଳର ଆଦାୟର ଚ୍ଚରି

ଅଣା ହୁଏ କି ନ ହୁଏ । ଧୋଇ ଆଉ ମରୁଡ଼ି ତ କାଳ ହେଉଛି । ଆପଣ ଠିକ୍ କହୁଛନ୍ତି । ମୁଁ ମନେ କରୁଛି ଓଡ଼ିଶାରେ ଏକଥା କାଟି ଦେବାକୁ ବାହାର ଭୂଇଁ ଲୋଡ଼ିବ ନାହିଁ । କିନ୍ତୁ ଆମ ସ୍ୱାଧୀନ ସରକାର ସେଥିପାଇଁ କଅଣ କରୁଛନ୍ତି ? ଆମେ ଉପାସ ରହି ଏ ସ୍ୱାଧୀନତା ପାଇ ଲଭ କଅଣ ! ଆମେ ସେଇଆ ଜାଣିବାକୁ ଚାହୁଁ ।

ବକ୍ତା : ଆପଣ ଯଥାର୍ଥ କହୁଛନ୍ତି । ବସନ୍ତୁ ମୁଁ ସେଇ କଥା ଆଉ ତାହାର ପ୍ରତିକାର ସମ୍ବନ୍ଧେ କହିବାକୁ ଯାଉଛି । ଧୀର ସ୍ଥିର ଭାବରେ ଆପଣମାନେ ବସି ଶୁଣନ୍ତୁ ।

ନରହର : ମୋର ପଦେ କଥା ଅଛି । ଶୁଣନ୍ତୁ ଆମେ ଏ ଅଞ୍ଚଳର ଜଣେ ବଡ଼ ବ୍ୟବସାୟୀ । ଆମକୁ ଲୋକେ ସାହୁଘର ବୋଲି କହନ୍ତି । ଦିନେ ଏଇ ମହାନଦୀ ଆମକୁ ଲକ୍ଷପତି କରାଇଥିଲା । ନଈରେ ପାଣି ଥିଲା, ସବୁଦିନେ ନାଆ ଯା’ ଆସ କରିପାରୁଥିଲା । ବ୍ୟବସାୟ ବାଣିଜ୍ୟ ସୁରୁଖୁରୁରେ ଚଳାଇ ଆମର ବାପା, ଗୋସେଇଁବାପା ଲୋକଙ୍କର ଭଲମନ୍ଦ ଚଳାଇ ନାଆଁ ରଖି ଆସିଥିଲେ । ଆଜି ଆମ କୁଟୁମ୍ବ ମୁଠାଏ ସୁରୁଖୁରୁରେ ଖାଇବାକୁ ଅଭାବ । ସୁବିଧାରେ ବ୍ୟବସାୟ ଚଳିବ କିପରି ? ଆମ ସରକାର ଏଥିର କି ବ୍ୟବସ୍ଥା କରୁଛନ୍ତି ?

ବକ୍ତା : ଆଚ୍ଛା, ଆପଣଙ୍କ ପ୍ରଶ୍ନର ମଧ୍ୟ ଉତ୍ତର ଦେବି, ବସନ୍ତୁ । ଏ ସମସ୍ତ ଗୋଟିଏ ପ୍ରଶ୍ନତଳେ ଯାଏ । ପ୍ରଦେଶର ଅନ୍ନ ବସ୍ତ୍ର ସମସ୍ୟାର ସମାଧାନ ଦିଗରେ ଚେଷ୍ଟା ନୋହିଲେ

ଆମ ସ୍ୱାଧୀନତା ପାଇବାର କୌଣସି ମୂଲ୍ୟ ନାହିଁ । ଆପଣମାନେ ଜାଣନ୍ତି କି ଆମ ଏଇ ଓଡ଼ିଶା ପ୍ରଦେଶ କେତେ ବଡ଼ ?

(କିଛିକ୍ଷଣ ନୀରବରେ ସଭାସ୍ଥ ଲୋକେ ପରସ୍ପର ମୁହଁକୁ ମୁହଁ ଚାହିଁଲେ ।)

ଆଚ୍ଛା, ଶୁଣନ୍ତୁ । ମୁଁ ଏଠାରେ ଆଉ ଗୋଟିଏ କଥା କହୁଛି—ପ୍ରାୟ ୧୫୬୫ ମସିହା ଶେଷ ପର୍ଯ୍ୟନ୍ତ ଆମେ ଆମ ଦେଶର ରାଜାମାନଙ୍କ ହାତତଳେ ଥିଲୁଁ ସ୍ୱାଧୀନ ଦେଶର ନାଗରିକ । ସେଇଠୁ ଆସିଲା ବାଦଶାହଙ୍କ ଅମଳ । ତା'ପରେ ୧୭୫୦ରେ ଏ ଦେଶକୁ ନେଲେ ମରହଟ୍ଟା । ୧୮୦୩ ବେଳକୁ ଆମ ଦେଶ ବ୍ରିଟିଶ ଶାସନ ତଳେ ଆସିଲା । ୧୯୪୭ଅଗଷ୍ଟ ମାସ ପନ୍ଦର ତାରିଖରେ ଆମେ ପୁଣି ପାଇଛେଁ ସ୍ୱାଧୀନତା । ଏଇ ଅଳ୍ପ ସମୟ ଭିତରେ ଆମ ଦେଶରେ ହଠାତ୍ ସୁନା ଫଳିଯିବ ବୋଲି ଆଶାକରିବା ଆମ ପକ୍ଷରେ ଠିକ୍ ହେବ କି ? ଶିଶୁ, ବୟୁସ୍କ ନୋହିବା ଯାଏ ତାକୁ ଲାଳନପାଳନ କରିବା ପିତାମାତାଙ୍କର କର୍ତ୍ତବ୍ୟ—ଏକଥା କିଏ ବା ନ ଜାଣେ ? ଆମ ସ୍ୱାଧୀନତାର ବର୍ତ୍ତମାନ ସେହି ଶିଶୁ ଅବସ୍ଥା ।

ଜଣେ : (ଉଠି) ଆପଣଙ୍କ କଥା ସତ୍ୟବୋଲି ମାନୁଛୁଁ । କିନ୍ତୁ ଭବିଷ୍ୟତ ଲାଗି ଆଜିଠାରୁ ବାଟ ନ କଲେ, ସବୁଦିନେ ତ ଆଉ ଶିଶୁ ନାଆଁରେ ଆମେ ପାର ପାଇଯିବୁଁ ନାହିଁ । ଧୋଇ, ମରୁଡ଼ି ଲାଗି ଆମ ସରକାର କି ବ୍ୟବସ୍ଥା କରୁଛନ୍ତି ? ବ୍ୟବସାୟ ବାଣିଜ୍ୟର କି ସୁବିଧା ଘଟୁଛନ୍ତି ? ଏସବୁ ଆମେ ଜାଣିବାକୁ ଚାହୁଁ । ଦେଶବାସୀ

ହିସାବରେ ଏ ଅଧିକାର ଆମର ଅଛିବୋଲି ଆପଣ ଅସ୍ୱୀକାର କରିପାରିବେ କି ?

ବକ୍ତା : ଅସ୍ୱୀକାର କରିବା ଦୂରେ ଥାଉ ବରଂ ଆପଣମାନଙ୍କର ଏଇ ଦେଶାତ୍ମବୋଧ ଜ୍ଞାନକୁ ମୁଁ ସମ୍ବର୍ଦ୍ଧନା ଜଣାଉଁ ଅଛି । ଏଇ ଧୋଇ ମରୁଡ଼ି ସମ୍ପର୍କରେ ସାରା ଭାରତବର୍ଷ-ଟର ଆମ ଓଡ଼ିଶାରେ ମଧ୍ୟ ନାନାସ୍ଥାନରୁ ନଦୀରେ ବନ୍ଧ ଦେବାଲାଗି ଦାବୀ ଉଠିଛି । ତେଣୁ ଆମ ସର୍କାର କି ଯୋଜନା କରିବାକୁ ବସୁରୁଛନ୍ତି ସେ କଥା ଆପଣମାନଙ୍କ ଗୋଚରକୁ ଆଣୁଅଛି । ଟିକିଏ ଧୈର୍ଯ୍ୟଧରି ବସି ଶୁଣନ୍ତୁ ।

ସଭାଲୋକେ : ଆଜ୍ଞା, କହନ୍ତୁ, କହନ୍ତୁ ।

ବକ୍ତା : ଆମ ପ୍ରଦେଶର କ୍ଷେତ୍ରଫଳ ଷାଠିଏ ହଜାର ବର୍ଗମାଇଲ । ଅର୍ଥାତ୍ ଇଂରେଜ ଜାତିର ଇଂଲଣ୍ଡ ଆଉ ୱେଲ୍ସ ଅପେକ୍ଷା ବଡ଼ । ଆମ ଦେଶର ଲୋକେ ଜ୍ଞାନ ବିଜ୍ଞାନରେ ପୃଥିବୀରେ କୌଣସି ଦେଶର ଲୋକଙ୍କଠାରୁ ଊଣା ନୁହନ୍ତି । ଆମ ପ୍ରଦେଶରେ କୋଡ଼ିଏ ଲକ୍ଷ ଏକର ଜମି ମଧ୍ୟରୁ ଏଗାର ଲକ୍ଷ ଏକର ଆବାଦର ଉପଯୁକ୍ତ । ଏଥିରୁ ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଯେ ଆମେ ମୋଟେ ସାତଲକ୍ଷ ଏକର ଜମି ଆବାଦ କରୁଁ । ଏଥିରେ ପୁଣି ଲୋକସଂଖ୍ୟା ଦିନକୁଦିନ ବଢ଼ିବାରେ ଲାଗିଛି । ତେଣେ ଆୟ ଊଣା ହେଉଛି । ଏଥିରେ ଆମକୁ ଆଉ ଖାଇବାକୁ ପିନ୍ଧିବାକୁ ମିଳିବ କେଉଁଠୁ ?

ଜଣେ : ଆପଣଙ୍କ କଥା ଆମେମାନେ ଶୁଣିଲୁଁ । ସାତଲକ୍ଷ ଏକର ଜମି ଅନାବାଦୀ ପଡ଼ିଛି ବୋଲି ଆପଣ ଯାହା କହୁଛନ୍ତି, ସର୍କାର ଏହାର ଆବାଦର କିଛି ଉପାୟ କରୁଛନ୍ତି ଭଲା ?

ବକ୍ତା : ଆପଣମାନେ ସବୁ କଥାରେ ଖାଲି ସର୍କାର କରିଦେବେ ବୋଲି ବସିରହିଲେ ତ ଚଳିବ ନାହିଁ । ସର୍କାର କିଏ ? ଜନତାର ସର୍କାର । ଆପଣମାନେ ତାକୁ ଗଢ଼ିବେ । ଦେଖନ୍ତୁ, ମହାନଦୀରେ ବଢ଼ିହେଲା । ପ୍ରଚୁର ପାଣି ଆସିଲା । ଆମେ ରହି ସହି ସେ ପାଣିକୁ ବ୍ୟବହାରରେ ଲଗାଇ ପାରିଲେ ମରୁଡ଼ି ବାଧା ଆଦୌ ବାଧନ୍ତା ନାହିଁ । ଆମ ଏଠାରେ ସାଧାରଣତଃ ବର୍ଷା ପଚାଶ ଇଞ୍ଚ । ପୁଣି ସେଇତକ ପାଣି ଯେବେ କିଆରିର ଦର୍କାରବେଳେ ସମାନ ଭାବରେ ବର୍ଷଯାକ ମିଳୁ ଥାଆନ୍ତା, ତେବେ ଆମର ଭାବନା ନ ଥାଆନ୍ତା । ଚତୁର୍ମାସ୍ୟା ଚାରିମାସ ଆମେ ପାଉଁ ବର୍ଷାପାଣି । ମାତ୍ର ହୁଏତ ଆମ ଦର୍କାର ବେଳକୁ ଛୋପାଏ ନାହିଁ । ଆଉ ଅଦର୍କାର ବେଳେ ମେଘ ପେଟ ଫଟାଇ ପାଣି ଅଜାଡ଼ିଲା । ଏଥିରେ ଫସଲ ହେବ କେଉଁଠୁ ? ତେଣେ ଦିନକୁଦିନ ମୁହାଣ ମୁହଁ ପୋତିହୋଇ ନଈ ପେଟରେ ପଠା ପଡ଼ିବାରେ ଲାଗିଲା । ଏଥିପାଇଁ ଯୋଡ଼ିଏ କଥା ଆମକୁ ଦର୍କାର । ପ୍ରଥମହେଲା ନଈରେ ସବୁଦିନେ କେମିତି ସମାନ ଭାବରେ ପାଣି ରହିବ ଯାହା ଫଳରେ ଆମର ନାଆ, ବୋଟ, ଜାହାଜ, ଯା'ଆସ କରି ସୁବିଧାରେ ମାଲ ନିଅଆଣ କରିପାରିବ । ଦେଶ ବିଦେଶରେ ବ୍ୟବସାୟ ବାଣିଜ୍ୟ ଚଳାଇ ଆମେ ସୁଖରେ ଚଳିବା । ଆଉ ଫସଲଲାଗି ଆବଶ୍ୟକବେଳେ ପାଣି ରହିବ—ଯହିଁରେ ମରୁଡ଼ି ବାଧା ଆଉ ଚାଷୀକୁ ବାଧିବ ନାହିଁ । ଏଇ ହେଲା ସାର୍‌କଥା । ସର୍କାର ତହିଁର ବ୍ୟବସ୍ଥା କରୁଛନ୍ତି । ( କରତାଳି ଶବ୍ଦ )

ସଭାରୁ : କି ବ୍ୟବସ୍ଥା କରୁଛନ୍ତି କହନ୍ତୁ, ଆମେ ଠିକଏ ଶୁଣିବାକୁ ଚାହୁଁଛୁଁ ।

ବକ୍ତା : ମହାନଦୀର ପାଣିକୁ ନିୟନ୍ତ୍ରଣ କରି କାର୍ଯ୍ୟରେ ଲଗାଇବାକୁ ତିନିଗୋଟି ବଡ଼ ବନ୍ଧ ପକାଇବାର ସ୍ଥିର କରାହୋଇଛି । ପୁଣି ଏଥି ସହିତ ବଡ଼ବଡ଼ ଜଳଭଣ୍ଡାର ରହିବ । ଯହିଁରେ କି ସବୁଦିନେ ଚାଷୀ କ୍ଷେତକୁ ପାଣି ପାଇପାରିବେ । ଦେଶରେ ଆଉ ଧୋଇ ମରୁଡ଼ି କଷ୍ଟ ରହିବନାହିଁ । ତା'ଛଡ଼ା ବିଜୁଳିଶକ୍ତି ଉତ୍ପାଦନ କରାଯାଇ ନାନା ପ୍ରକାର କଳକାରଖାନା ବସିପାରିବ । ଦେଶର ମୂଳଧନ ଓ ଦେଶର ପରିଶ୍ରମରେ ଏ ସମସ୍ତ କାର୍ଯ୍ୟ ଚଳିଲେ ସାମାନ୍ୟ କେତୋଟା ବର୍ଷ ପରେ ଆଉ ଅନ୍ନ ବସ୍ତ୍ରର ଏତେ ଭାବନା ଥିବନାହିଁ ।

ଜଣେ : ହଁ ଯେ ଆଜ୍ଞା, ସେ ବନ୍ଧ ସବୁ ପୁଣି କେଉଁକେଉଁଠାରେ ପଡ଼ିବ ?

ବକ୍ତା : ପ୍ରଥମଟି ହୀରାକୁଦ; ଯାହାକୁ ପୂର୍ବେ ହୀରାଖଣ୍ଡ କୁହା ଯାଉଥିଲା । ଦ୍ୱିତୀୟଟି ଟିକରପଡ଼ା ଓ ତୃତୀୟ ବନ୍ଧଟି ନରାଜ ପାଖେ ହେବାର ଉପଯୁକ୍ତ ସ୍ଥାନ ବୋଲି ବଡ଼ବଡ଼ ବିଶେଷଜ୍ଞ ଇଞ୍ଜିନିୟରମାନେ ମତ ଦେଇଛନ୍ତି । ଯୋଜନାଗୁଡ଼ିକୁ ଯଥାଶୀଘ୍ର କାର୍ଯ୍ୟକାରୀ କରାଇବାପାଇଁ ଆପଣମାନେ ସାହାଯ୍ୟ ଦିଅନ୍ତୁ । ସରକାର ଆପଣମାନଙ୍କ ସହାନୁଭୂତି ଚାହାନ୍ତି ।

( କିଛିକ୍ଷଣ ନୀରବ ଓ ଫୁସ୍‌ଫୁସ୍ ଶବ୍ଦ )

ନରହରି : ଆମେମାନେ ଏ ବିଷୟରେ ବିଚାରକରି ଆପଣଙ୍କୁ କହିବାକୁ କିଛି ସମୟ ଚାହୁଁ । ଆବଶ୍ୟକ ହେଲେ ଆମ ଭିତରୁ ଲୋକେ ଯାଇ ଏ ସ୍ଥାନମାନ ପ୍ରଥମେ ଦେଖି ଆସିବେ । ତା'ପରେ ଯାହାହେବ, ଜଣାଇବୁ ।

ବକ୍ତା ଭଲ କଥା । ଆପଣମାନେ ସାତଦିନ ମଧ୍ୟରେ ମତାମତ ଜଣାନ୍ତୁ । ସର୍କାର ଶୀଘ୍ର କାର୍ଯ୍ୟ ଆରମ୍ଭ କରିବାକୁ ସ୍ଥିର କରିଛନ୍ତି । ପ୍ରଥମେ ହୀରାକୁଦ କାର୍ଯ୍ୟ ଆରମ୍ଭ ହେବ । ଏଥିରେ ବହୁତକୋଟୀ ଟଙ୍କା ବ୍ୟୟର ଅଟକଳ କରା-ଯାଇଛି ।

ନରହରି : ଆଜିର ସଭା ତେବେ ଏହିଠାରେ ସ୍ଥଗିତ ରହୁ । ଆମେ-ମାନେ ଏ ଯୋଜନା ସମ୍ବନ୍ଧେ ବିଚାରସାରିବା ପରେ ପୁଣି ଆଲୋଚନା କରାଯିବ ।

ବକ୍ତା : ହଁ, ଆପଣମାନଙ୍କୁ ବନ୍ଧ ନିର୍ମାଣ ସଂପର୍କରେ ଆହୁରି କେତେକ କଥା କହିବାର ଅଛି । ଆଜି ଅନେକ ବେଳ ହେଲାଣି । ସେ ସମସ୍ତ ଅନ୍ୟ ଦିନକୁ ରହୁ । ଆଜି ଏହି ପର୍ଯ୍ୟନ୍ତ ଆଲୋଚନା ପରେ ସଭା ଭଙ୍ଗ ହେଲା ।

( ସମସ୍ତେ କରତାଳି ଦେଲେ )



## ଦ୍ୱିତୀୟ ଦୃଶ୍ୟ— ( ଗ୍ରାମପଥ )

[ ଏକ ଦିଗରୁ ନାରାୟଣ ଓ ଅନ୍ୟଦିଗରୁ ଶମ୍ଭୁନାଥ ବାଟରେ ଭେଟାଭେଟି ହେଲେ । ନାରାୟଣ ଶମ୍ଭୁନାଥଙ୍କୁ ନମସ୍କାର କଲେ । ନାରାୟଣ କଲେଜରେ ଦୁଇବର୍ଷ ପଢ଼ି ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ ଗ୍ରାମର ମାମଲତକାର ହୋଇଛନ୍ତି । ବୟସ ୨୫।୨୬ । ଶମ୍ଭୁଙ୍କ ବୟସ ୪୪।୪୫ ହେବ । ସେ ସାଧାରଣ ଭାବେ ପାଠଶାଠ ପଢ଼ିଛନ୍ତି । ତାଙ୍କ ସଦଗୁଣ ହେତୁରୁ ସେ ଗ୍ରାମବାସୀ ମାନଙ୍କର ସମ୍ମାନ ଓ ସ୍ନେହ ପାଇଥାଆନ୍ତି । ଅଧିକନ୍ତୁ ସେ ସାଧାରଣ ହିତକର କାର୍ଯ୍ୟରେ ସର୍ବଦା ଆଗୁଆ । ଆଉ ଠିକ୍କା କଣ୍ଟ୍ରାକ୍ଟ ମଧ୍ୟ କରିଥାଆନ୍ତି । ଅର୍ଥ ବା ଗ୍ରାମର ମୁଖିଆ ପଣ ଲାଭର ଲାଳସୀ ନୁହନ୍ତି ସେ । ]

ନାରାୟଣ : ( ଅତି ସନ୍ତର୍ପଣରେ ନମସ୍କାର କରି ) ନମସ୍କାର, ନମସ୍କାର । ମୁଁ ତ ଆପଣଙ୍କ ଆଡ଼େ ବାହାରିଥିଲି ଶମ୍ଭୁବାବୁ । କୁଆଡ଼େ ଯାଇଥିଲେ କି ?

ଶମ୍ଭୁ : ଏଇ ଆମ ରଘୁ ମାଆଟାକୁ କାଲିଠାରୁ କମିତି ଅଙ୍ଗୀର୍ଣ୍ଣ ହେଇ ଦୁଇବାଟରେ ଗ୍ଲାଲୁଛି ଧାର । ଆମ୍ଭକ ଦିନ ତ ! ଟୋକାମାନେ ବୁଲି ଆମ୍ବ ଗୋଟାଇ, ପାଚିଲା ଆମ୍ବ

ଖାଇ, ପାଣି ପିଇ ଏଇ ଅବସ୍ଥା । ଠିକଏ ଭଲ ଅଛୁ ବଗୃଗ୍ର । ଦୁଃଖୀଲୋକ ! କିଏ ସେମାନଙ୍କୁ ପଚ୍ଚରୁଛି ? ତାକୁଇ ଠିକଏ ଦେଖିବାକୁ ଯାଇଥିଲି ।

ନାରାୟଣ : ଆଜ୍ଞା, ସେ ଏକୁଟିଆ କଅଣ ଦୁଃଖି ଲୋକ ? ଏବେ ଆମେ ସମସ୍ତେ ଏକା ଡଙ୍ଗାରେ ବସିବା କଥା ହେଉଚି । ଶୁଣିଲେଣି ନାଁ ?

ଶମ୍ଭୁ : କଅଣ ?

ନାରାୟଣ : ସଭାକୁ ଯାଇ ନ ଥିଲେ କି ? ହୀରାକୁଦଠି ପଥ୍ର ଗୋଟେ ବନ୍ଧ ପଡବାର ମସୁଧା ହେଉଚି ? ବୁଝୁଛନ୍ତି ତ ? ଆମ ଅବସ୍ଥା କଅଣ ହେବ ?

ଶମ୍ଭୁ : କାହିଁକି ? ନଈ ପାଣିକି ଘେରାଉ କରି ରଖିଲେ ଆଉ ମରୁଡ଼ିକି ଦକ ନ ଥିବ । ଏଣେ ବଡ଼ି ବଦଳରେ ତଳ ମାଳଯାକ ଯାହା ବର୍ଷକୁବର୍ଷ ଧୋଇରେ ଯାଉଛି, ସେଥିରୁ ରକ୍ଷା ମିଳିବ ଲୋକଙ୍କୁ । ଭଲକଥା ଗୋଟାଏ ହଉଛି ।

ନାରାୟଣ : ଏଇଆ ଏବେ ଆପଣ ବୁଝିଲେ ?

ଶମ୍ଭୁ : ନାଇଁ । ଆଉ ବି ବିଜୁଳୀ ଶକ୍ତି ସହଜରେ, ଶସ୍ତାରେ ମିଳିଲେ ଜଣେ ଲୋକ ଏକା ସମୟଭିତରେ ତିନି ତିନି ଜଣ ଲୋକଙ୍କ କାମ ଉଠାଇଦେଇପାରିବ ।

ନାରଣ : (ତାଚ୍ଛିଲ୍ୟ ହସ ହସି ) ହଁ, ହୀରାକୁଦ ବନ୍ଧ ପଡ଼ିଗଲେ ଆମ ଲୋକଙ୍କର ଆଉ ଗୃହଗୃହଠା ହାତ ଗଜୁରି ଉଠିବ ଟି ! ଏ ଗୁଡ଼ିକ ଆପଣଙ୍କପରି ଜାଣିବାଶୁଣିବା ଲୋକ ବିଶ୍ୱାସ କରୁଛନ୍ତି ? କଅଣ ବିଧାତା ପୁରୁଷ ଗୋଟାଏ ନୂଆ ଛଅ ହାତିଆ ମଣିଷ ସର୍ଜନା କରିବେ ?

ଶମ୍ଭୁ : ଆହେ ନାହିଁ ହେ ! ମଣିଷର ତ ହ'ଠା ହାତ, ଆଉ ଗୃହଠା ଛଅଠା ହେବ ବୋଲି କହିବ ? କଅଣ ଏଡ଼ିକ ମୂର୍ଖ ମୁଁ ? ତା' ନୁହଁ, କାମଠା ହଜୁଳଶକ୍ତି ବଳରେ ହେଲେ ସେତିକବେଳ ଭିତରେ ତିନିଠା ମଣିଷର କାମ ଉଠିବ । ଏଇଆ ହେଲା ମୋ କହିବା କଥା ।

ନାରଣ : ବାପ ମରିବ ନା ହଡ଼ା ବିକିବା ? ଜାଣିଲେ ଆଜ୍ଞା ! ସେ ସବୁ କଞ୍ଚା ମିଛ କଥା । ଏତିକବେଳୁ ସ୍ୟାର ପ୍ରତିବାଦ କରନ୍ତୁ । ନୋହିଲେ ମୁଁ ସେ ବାବୁଠି ସାଙ୍ଗେ ଯାହା କଥାବାର୍ତ୍ତା ହେଲି, ସେଥିରେ ଲକ୍ଷେ ପଚିଶ ହଜାର ଏକର ଜମି ବୁଡ଼ିରେ ଯାଉଛି । ଆଉ ୧୬୮ ଖଣ୍ଡ ଗାଆଁ ଉଚ୍ଛନ୍ନ ହେଇଯିବ ।

ଶମ୍ଭୁ : ଆରେ, ମୁଁ ସବୁ ତାଙ୍କ ସଙ୍ଗେ କଥା ହେଇ ଯୁକ୍ତିତର୍କ କରି ବୁଝିଛି । ହନେ ମୋ'ର ବି ସେଇ ଧାରଣା ଥିଲା । କଥାଠାକୁ ଠିକଏ ତଳେଇ କରି ବୁଝିଲେ ସିନା ହେବ । ଏବେ ୬୦ ହଜାର ଏକର ଗୃହଜମି ବୁଡ଼ିବ । ବାକି ଯାହା ବୁଡ଼ିବ, ସେସବୁ ଗୋଚର, ଠେଙ୍ଗ, ବାଲିଚର— ଏଇମିତି, ଆଉ ଗାଆଁ ବୁଡ଼ି କଥା ଯାହା କହିଲ, ସେ କଥା ସତ । ହେଲେ, ବୁଡ଼ିଯିବା ଗାଆଁର ଲୋକଙ୍କୁ ଜମି ଜାଗା ହିଆହେବ । ଷତିପୂରଣ ବି ହିଆ ହେବାର ମସୁଧା ହେଇଛି । ଯୋଉ ଜମି ସେମାନେ ପାଇବେ, ସେଥିରେ ତ ଆଉ ବର୍ଷ ପାଣିଠାକୁ ଧୋଇ ମରିଡ଼ ନ ଥିବ । ଏମିତି—କଅଣ କେବେ ଯାଉଛି, କେବେ ହଉଚି—ଭୈଁ ଦୈବା । ବାରବାଠି ଗୃଷ—ନିତି ଉପାସ ! ସ୍ୟାଠୁଁ ଗୋଠାଏ ନିଶ୍ଚିତ ଆୟ କଅଣ ଭଲ ନୁହେଁ ? ତା'ଛଡ଼ା ସାରା ଓଡ଼ିଶାକୁ ତ ପୁଣି ତୁମେ ଆମେ

ଦେଖିବା । ଆମେ ଜଣେ କେତେ ଖାଇ ପିନ୍ଧି ଖୁସିରେ ରହିବା—ଏ ବିଚାର ଅନ୍ୟାୟ । କଓ, ଦୁନିଆଁ ଭଲଟା ଭଲ, ନା ଆମ ଘର ଅମାର ଭଲଟା ଭଲ ? ତୁମେ ଟିକିଏ ଦୂରକୁ ଚାହୁଁନା ? ଆଜିକି ନ ଅନାଇ କାଲିକି ଅନାଅ ।

ନାରଣ : ସେଗୁଡ଼ା ବାଜେ କଥା । ଥରେ ଗଲେ ଆଉ କି ଆସେ ?

ଶମ୍ଭୁ : ଆହେ ନାରଣ ! ପାଞ୍ଚ ଜଣ ସୁଖରେ ଥିଲେ ଆମର ଦୁଃଖ ରହିବ ନାହିଁ । ମୁଁ ତ ଜଣେ ବଡ଼ ଚାଷୀ । ମୋ'ର ତ ବେଶୀ କ୍ଷତି । ବାକି କଥାଟା ସମଝିବାବେଳକୁ—ପାଞ୍ଚ ବର୍ଷ ଆଗକୁ ଚାହିଁଲେ ମୋତେ ତ କାହିଁକି ବାଧୁ ନାହିଁ ? କଳ-କାରଖାନା—ନାନା ରକମର ଜିନିଷ ହେବ । ଆମରି ଲୋକେ ଖାଇପିଇ ଜୀଇବେ ନା ବିଲାତରୁ ଲୋକ ମାଡ଼ିଆସିବେ ହେ ? କଥାଟାକୁ ଟିକିଏ ଥିର ମନରେ ବିଚାର କର । ଏମିତି ହୋ'ରେ ମାଡିଲେ କଅଣ ହେବ ? ଗୋଟିଏ ପ୍ରସ୍ତାବ ଯେତେବେଳେ ହେଉଛି, ଏଇ ମାଡ଼ିକେ ହେଇଯାଉ । ବାଧା ଦେଲେ କେତେବେଳେ କୋଉ କଥା ଥାଏ । ଆମ ଲୋକଙ୍କୁ ପ୍ରସ୍ତାବଟା ଭଲ କରି ବୁଝାଅ ।

ନାରଣ : ମୁଁ ତ ନିଜେ ଯାହା ବୁଝୁଛି···ଏଥିରେ ଆମର କିଛି ସୁବିଧା ହେବାପରି ଦିଶୁ ନାହିଁ । ମୁଁ ଆଉ ବୁଝାଇବି କାହାକୁ ?

ଶମ୍ଭୁ : ତୁମେ ଇ ବୁଝେଇବ । ପାଠଶାଠ ପଢ଼ିଛ । ଦେଶ-ବିଦେଶର ଖବର-ଅନ୍ତର ତ ଜାଣ । ଆମେରିକାର ଟେନେସି ଭାଲି ବୋଲି ଯାହାକୁ କହନ୍ତି—ସେଠା ଲୋକେ

କଅଣ ଥିଲେ, ଆଜ ସେମାନେ କଅଣ ହେଇଛନ୍ତି ? ସବୁଥିରେ, ସବୁଦିନେ, ସବୁଥିକ ପଛେଇ-ପଛେଇ ଆମ ଅବସ୍ଥା ଏବେ ବାର ଗଣ୍ଡା ଦ'କଉଡ଼ା ହେଲାଣି । ଗୋଟାଏ ଯୋଗ ପଡ଼ୁଛି । ଏଥିରେ ବାଧା ଦିଅ ନାହିଁ । ଏ ଦେଶକୁ ବିଧାତା ପୁରୁଷ ଚାହିଁଲେଣି ବୋଲି ବୁଝ । ଯା, ବାଟଟା ତ, ଆଉ କେତେ କଥାଭାଷା ହବା ଠିଆଠିଆରେ ? ଘରକୁ ଆସିବ, ବସି ସବୁ କଥା ବିଚାରିବା, ବୁଝିଲ ? ଯା । (ଚାଲିଗଲେ)

ନାରଣ : (ଶମ୍ଭୁ ଚାଲିଯିବାପରେ) ମୂର୍ଖ ! ଗାଆଁ ମାମଲତକାର ହେଇଛି ! ଆଚ୍ଛା, ଦେଖୁଛି ତୋ ବୁଦ୍ଧି ।
(ଗୋଟିଏ ବୁଢ଼ୀ ଆସିଲା ପତରବୋଝ ଧରି )

ବୁଢ଼ୀ : କିଏ ରେ ବାପ, ନାରଣ ? ଆରେ କଅଣ ସବୁ ଜମିବାଡ଼ି ଆମର ସରକାର ନେଇଯିବ ବୋଲି ନଈକୂଳେ ସଭିଏଁ କହୁଥିଲେ । ତମେମାନେ ପାଠପଢ଼ି ଯୋଗ୍ୟର ହେଲ । ଏକଥା କିଛି ବୁଝାସମୁଝା କରୁ ନାହଁ ?

ନାରଣ : ଜମି କଅଣ ମାଉସୀ ! ଆମ ଗାଆଁକୁ ଗାଆଁ ପାଣିରେ ବୁଡ଼ାଇଦବାକୁ ବସିଛି ଏଇ ସରକାର । ସେଇକଥାପାଇଁ ମୁଁ ବାହାରିଛି ଗାଆଁରେ ସମସ୍ତଙ୍କୁ କହି ସଭା ଡାକିବି । ଶମ୍ଭୁବାବୁଙ୍କୁ କହିଲି ଯେ ସେ ଆଉ ପଚିଆ ।

ବୁଢ଼ୀ : ଆରେ ବାପ ! କଥାଟା କଅଣ ମୁଁ ଭଲ କରି ବାରି-ପାରୁ ନାହିଁ । ଶମ୍ଭୁବାବୁ ତ ପୁରୁଖା ମଣିଷ । ତାଙ୍କଠୁଁ ବିଚାର ନେଇକରି କ'ର ।

ନାରଣ : ଆଉ ବିଚାର ? ଗୋଟାଏ ଖୁସାମତିଆଟାଏ ସେ । ସରକାରଠୁଁ କିଛି ଲାଞ୍ଚ ପାଇଛି କି କଅଣ ?

ବୁଢ଼ୀ : ଆହା ହା ! ଦେବତାପରି ଲୋକ ସେ । ଏକଥା କହନ୍ତୁ ? ବୁଝି ବସ୍ତିର କଅଣ କରୁଚ କର । ଆମର ଆଉ କେତେ କାଳ ? ତମେମାନେ ରହିବ, ଘରଦ୍ୱାର କରିବ । ଗାଆଁରେ ସଭିଙ୍କି ଡାକରା ଦେଇ ପଞ୍ଚୁ ଆଡ଼ ବସାଅ । ପାଞ୍ଚ ଜଣଙ୍କ ବୁଦ୍ଧି, ବସ୍ତିର ଶୁଣ ।

ନାରଣ : ହଁ, ମୁଁ ଯାଉଛି । ବୁଝିବ ଆଉ କଅଣ ? ସବୁ ବୁଝିଛି ମୁଁ ମାଉସୀ ! ଆମେ ଉଚ୍ଛନ୍ନ ଯିବା କଥା । ସଞ୍ଜବେଳେ ସଭା ହବ, ସବୁ ଶୁଣିବୁ ନାଇଁ କ ।

ବୁଢ଼ୀ : ହଉ, ହଉ ଯା । ବଡ଼ ଥିଲେ ପସ୍ତିର, ସାନ ଥିଲେ ବସ୍ତିର । ପଞ୍ଚୁ ଆଡରେ କଥାଟା ପକେଇସାରି ଯାହା ହେଲେ କରିବ ସିନା ! ଏମିତି ସାଗରେଷରୁ କ ମୁନାଫା ଅଛି ? ଯା'ରେ ବାପ ! ( ନାରଣ ଗୁଲିଗଲେ ) ଶମ୍ଭୁ ବାବୁଙ୍କୁ ଠିକଏ ପସ୍ତିରିଦିଏଁ । ଇଏ ଠୋକାଠାକଳା ! କଅଣ କହୁଛି—କଅଣ ନାଇଁ । ମନଟା ମାନୁ ନାଇଁ ମୋର ।

( କହୁ-କହୁ ପ୍ରସ୍ଥାନ )



## ତୃତୀୟ ଦୃଶ୍ୟ— (ଅଳନ୍ଦ)

[ ରତ୍ନାକର ସାହୁଙ୍କ ଘର-ଭିତର । ନରହରି ଓ ତାଙ୍କ ଭଉଣୀ ସ୍ନେହ ବସି କଥା ହେଉଥିଲେ ]

ସ୍ନେହ : ମୁଁ ତାଙ୍କ ଘରକୁ ଗଲାବେଳେ ଯାହା ଥିଲା, ତା'ର କାଣିଚାଏ ଆଉ ଏବେ ନାହିଁ । ହାତିଶାଳପରି ଏଡ଼େ-ଏଡ଼େ ଧାନଘର ଦ'ଟା, ଧାନ ହେଇ ଗୋଟିଏ ନାହିଁ ! ସେ କଥା ବା କିଏ ପଚାରେ ? ବର୍ଷକୁ ବର୍ଷ ଛପରକୁ ନଡ଼ା ମିଳୁ ନାଇଁ ଯେ ଏ ବର୍ଷ ଦଇଶ ଟଙ୍କାର ନଡ଼ା କିଣାହେଇ ଘର ଛପର ହେଇଛୁ । କହୁ ତ ଥିଲେ ଘର ଗୋଟାଏ ପରସ୍ତ ଭାଙ୍ଗିଦେବେ ବୋଲି ।

ନରହରି : ହଁ, ନ ହେଲେ ଆଉ କଅଣ କରିବେ ? ଆଉ ବର୍ଷକୁ ତ ସବୁତକ ଯାଉଛୁ ବନ୍ଧତଳେ ବୁଡ଼ି । ସରକାର ପରା ବିଚାର କରିଛନ୍ତି ଆମ ଭଲକୁ ? ଆମର ଅସଲ କଥାଟି-ତକ ତ ସବୁ ଯାଉଛୁ । (ଉମା ଆସିଛୁ )

ଉମା : କଅଣ ଭାଇ-ଭଉଣୀଙ୍କ କଥାଭାଷା ସରିଲା କି ନାହିଁ ? ଭାତମୁଠାକ କାକର ହେଇଗଲେ ତେବେ ଯାଇ ଖାଇବାକୁ ସୁଖ ହେବ, ନାଇଁ ? ସ୍ନେହ ନୂଆବୋଉଙ୍କର ଭାଇଙ୍କି ଦେଖି ତ ପେଟ ପୂରିଯାଉଥିବ—ଭୋକ ଥିଲେ ସିନା ଖାଆନ୍ତେ !

ନରହର : ତମ ଭାଇ ତ ଖାଇବାର ସବୁ ବରାଦ କରିଦେଇଛନ୍ତି ।
କେତେଟା ଧନ କ ଆଉ ? ଆମର ତ ଘରଖଣ୍ଡ ହେଲେ
ରହିବ, ତାଙ୍କର ଗାଆଁ ଟା ସାରା ପାଣିରେ ଗାଧୋଉଛନ୍ତି ।
ସରକାର ନୋଟିସ୍ ଦେଇସାରିଲେଣି । ହୀରାକୁଦ
କାମ ତେଣେ ଆରମ୍ଭ ହୋଇଗଲାଣି । ତମ ଭାଇ ତ ପୁଣି
ସେଥିରେ ଜଣେ ମାମଲତକାର ହେଇଚନ୍ତି ଶୁଣିଲି ।

ଉମା : ପାଞ୍ଚ ଜଣ ଯେଉଁ ଡଙ୍ଗାରେ ବସିବେ, ଆମେ ସେଇଥିରେ
ବସିବା ସିନା ! ରାଜ୍ୟ ଗଲେ ଆଉ ଆମେ ଥାଇ କଅଣ
କରିବା ? ଆଜ ଭାଇଙ୍କି ସରକାରପଟିଆ ହେଲେ ବୋଲି
କହୁଚ, କାଲି ବେଳ ପଡ଼ିଲେ ତେମେ କଅଣ ନ
ଯାଇ ରହିପାରିବ ?

ନରହର : ହଁ ନା, ଏଡ଼େ କହିଲାବାଲି କିଏ ? ସାତପୁରୁଷୀ
ମୂଳଡିହ କଅଣ ଖାଇ ଥାଉଥାଉ ଛୁଡ଼ିଦବା ? ମରଦ ନାଁ
ମାଇଚିଆ ଆମେ ? କି, ଏମିତି ପ୍ରାଣ ନ ଥିଲେ ?

ନେପଥ୍ୟରୁ : ନରହରିବାବୁ ଅଛନ୍ତି ?

ନରହର : ନାରଣବାବୁ ଡାକିଲେଣି କି କଅଣ । ତମେ ସବୁ
ଟିକିଏ ଭିତରକୁ ଯା’ ।

ଉମା : ସେ ଟିକିଏ ବସନ୍ତୁ ନା ଏବେ । ମୁଁ ଚେ ଖାଇଦେଇ କଥା
ହଉଥା’ । ଆହାରଗଣ୍ଡାକ ସାତଶୀତଳ ହେଇ-
ଯିବ ଯେ !

ନରହର : ନ ହେଲା, ପଖାଳଦିଅ । ସେ କଅଣ କାମରେ ଆସିଥିବେ,
ମଠ କଲେ ଚଳିବ ?

ସ୍ନେହ : କୋଉ ନାରଣବାବୁ ?

ନରହର : ସେଇ ମ, କଲେଜରେ ପଢ଼ୁ ନ ଥିଲେ ? ଗାଆଁରେ ଆସି ରହିଛନ୍ତି । ସ୍ୱାବଲମ୍ବନ—ଆନ୍ଦୋଳନ ସେଇ ତ ମୁଖିଆ ହୋଇ ଚଳେଇଛନ୍ତି ।

ନେପଥ୍ୟରୁ : ନରହରବାବୁ !

ନରହର : ହଁ ଆଜ୍ଞା, ଆସନ୍ତୁ । ଯା, ତମେସବୁ ଯା ଟିକଏ ।

ନାରଣ : କଅଣ ଭିତରକୁ ଯିବ ?

ନରହର : ( ଠିଆହୋଇ ) ଆସନ୍ତୁ, ଆସନ୍ତୁ ।

( ଉମା ଓ ସ୍ନେହ ଚାଲିଗଲେ, ନାରଣ ଆସିଲେ )

ନରହର : ( ଆସନ ଦେଖାଇ ) ବସନ୍ତୁ । ( ନାରଣ ବସିଲେ ) ବୁଝିଲେ ନାରଣବାବୁ ! ସମସ୍ତ ଯାହା ହୋଇଛନ୍ତି, ସବୁ କଥା ଖୋଲାଖୋଲି ଦାଣ୍ଡରେ କଥାବାର୍ତ୍ତା ହେଲେ ଚଳିବ ନାହିଁ । ସେଇଥିପାଇଁ ଘରଭିତରକୁ ଡାକିଲି ।

ନାରଣ : ଭଲ କଲେ । ଆଜି ମିଟିଙ୍ଗ୍ ହେବାର ଠିକ୍ ହୋଇଗଲା, ସଞ୍ଜ ପାଞ୍ଚଟାବେଳେ । ସଭାପତି ଆପଣ । ଲୋକେ ଆମ ଆଡ଼କୁ ଆଉକିଆସିଲେଣି । ଖାଲି ଏଠି ସେ ଶମ୍ଭୁବାବୁ ଆଉ ତେଣେ ମଫସଲରେ ଆପଣଙ୍କ ବନ୍ଧୁ ସତ୍ୟବାନ୍ ଯାହା ଆମ ବିରୁଦ୍ଧରେ । ଆପଣ ସତ୍ୟବାନ୍‌କୁ ଡକାଇ ସବୁ କଥା ବୁଝାଇ କହିଦିଅନ୍ତୁ ନା—ସେ ତ ଅବଶ୍ୟ ଆପଣଙ୍କ କଥା ମାନିବେ ।

ନରହର : ସେଇଥିପାଇଁ ତ ତାଙ୍କର ଆମର ଅପଡ଼ ହେବାପର୍ଯ୍ୟନ୍ତ ଗଲାଣି । ସେ କହୁଛନ୍ତି—ଯାହା ହଉଚି, ଲୋକଙ୍କର ଭଲ ପାଇଁ । ଆମର ତ ମତ ଅଲଗା, ଜାଣନ୍ତି ।

ନାରଣ : ସତ୍ୟବାନ୍ ତ ପାଠଶାଠ ଦି' ଅକ୍ଷର ଯାହା ହେଲେ ପଢ଼ିଛନ୍ତି । ସେ କେମିତି କଥାଟାକୁ ବୁଝିପାରୁ ନାହାନ୍ତି ?

ଘର ଯିବ, ଜମି ଯିବ, ଉଚ୍ଛନ୍ନ ହେବା—କଅଣ ନା ଯାହା ହେଉଚ, ଭଲପାଇଁ ଆମର । ବାଃ ! ଭଲ ବିଚାର ତ ?

ନରହରି : ଶୁଣୁଛନ୍ତ ତ ଆଉ କହିବ କଅଣ ? ସେ ପରା କହିଲେ, ଏମିତି ଅଧାପେଟ ଖାଇ ମରିବା କାହିଁକି ? ଦୁସୁରା ଯାଗାରେ ଘର କରି ରହି ନୂଆ ଜମି ଭାଙ୍ଗି, ଫେର୍ ନୂଆ ସଂସାର ଗଢ଼ିବା । ଆମର ମଙ୍ଗଳ—ରାଜ୍ୟର ମଙ୍ଗଳ ।

ନାରଣ : ମଙ୍ଗଳ ? ସତରେ ଗୁରାଏ ଜମିବାଡ଼ ଆମକୁ ମିଳିଯିବ ପରା ! ବଡ଼ବଡ଼ିଆ କେଇଟା ବଡ଼ ବଡ଼ ଗୃହକରି ପାଇ ଫାଇଦା ଉଠେଇବେ । ଝିଣିକା ମରିବେ, ବଣି ପୋଷା-ହେବେ ।

ନରହରି : ବନ୍ଧକାମରେ ସେ ପରା କଅଣ ଗୋଟାଏ ତଦାରଖି ହାକମ ହୋଇଛନ୍ତି ବୋଲି ଶୁଣିଲି ।

ନାରଣ : ସେ କେତେ ଦିନ ? ଡେରି ଦିନଆ ଯମ । ଆପଣ କାମ ସାରି ବାହାରନ୍ତୁ । ଆଜି ମିଟିଙ୍ଗ୍‌ରେ ସାରାସାରି ଗୋଟେ କଚ୍ଛ ହୋଇଯିବ, ବୁଝିଲେ ? ଆମେ ତ ଅଳ୍ପ ଲୋକ ନହୁଁ ?

ନରହରି : ତେଣେ କାମ ଯେ ଆରମ୍ଭ ହୋଇ ଆଗେଇଚାଲିଛି ।

ନାରଣ : ଚାଲିଛି ଆଉ ବେଶୀ କଅଣ ? ଆପଣମାନେଇ ମତେ ଏ କାମରେ ଆଗୁଆ କରି ଧରିଛନ୍ତି । ମୋ ଜୀବନ ଯିବ ପଛେ, ମୁଁ ତ ହଟିଯିବା ପୁଅ ନୁହେଁ । ଆଜି ବାହାରୁ କେତେ ଜଣ ବଡ଼ବଡ଼ ନେତାଙ୍କୁ ଡାକିଛି । ସେମାନେ ଏଇ ଟାଡ଼ରେ ଆସିଯିବେ । ଫେର୍ ତାଙ୍କର

ରହିବା, ଖାଇବା ଏସବୁ ବ୍ୟବସ୍ଥା ହେବା ଦରକାର । ଗୃହ ଯାହା ହାତରେ ଅଛି, ସେ ନିଅଣ୍ଟ ହେବ । ତା-ପାଇଁ କିଛି ଯୋଗାଡ଼ ଏପର୍ଯ୍ୟନ୍ତ ହେଇ ନାହିଁ । ହାଡ଼-ହାର ଦୁଇଶହ ପର୍ଯ୍ୟନ୍ତ ଟଙ୍କା ଆହୁରି ଦରକାର ।

ନରହରି : ଟଙ୍କା ତ ବସ୍ତାର ଖର୍ଚ୍ଚ ହେଉଛି । ଖବର କାଗଜବାଲା, ଦଳସଙ୍ଗଠନ ଖର୍ଚ୍ଚ, ନେତାମାନଙ୍କ ପାଇଁ ଖର୍ଚ୍ଚ— ଖାପ୍‌ମାପ୍ ନାହିଁ; ବାକି କାମରେ କଅଣ ହେଲା ?

ନାରଣ : କ୍ଷେତ ପ୍ରସ୍ତୁତ ହୋଇଗଲାଣି । ଖାଲି ମଞ୍ଜି ବୁଣି ପାଣି ସିଞ୍ଚିବା କଥା ବାକି । ଆଚ୍ଛା ହଉ, ମୁଁ ଯାଏଁ, ଦେଖେଁ । ସେମାନେ ଆସିଥିବେ । କିଛି ଟଙ୍କା ଆପଣ ରଖିଥାଆନ୍ତୁ । ଫେର୍ ୫ଟାକୁ ଆସୁଛି ମୁଁ । ନମସ୍ତେ ।

ନରହରି : ନମସ୍ତେ ( ନାରଣ ଚାଲିଗଲେ )
( ସ୍ନେହ ଆଉ ଉମା ଆସିଲେ ଘରଭିତରୁ )

ସ୍ନେହ : ଭାଇ ! ଆର ଘରେ ଆମେ ନଣନ୍ଦ ଭାଉଜ ଦୁହେଁ ତମ କଥାବାର୍ତ୍ତା ଟିକିଏ ଟିକିଏ ଶୁଣିଛୁଁ । ଏତେ ସବୁ ଯେ ଲାଗିଛ, ତେଣେ କାମ କେଉଁଆଡ଼େ ଗଲାଣି ଭଲ ଖବର ରଖିଲଣି ? ମିଛରେ କାହିଁକି ଏ ଭଡ଼ା ଓଟରା ? ତାମ ଶଳା-ଭଣେଇଙ୍କ ଭିତରେ ତୁଚ୍ଛାଟାକୁ ମନ ଫଟାଫଟି କାହିଁକି ? ସରକାର ଯେଉଁଟାକୁ ସତରେ ଲୋକଙ୍କ ଭଲ-ପାଇଁ ବୋଲି ବୁଝିଛନ୍ତି, ସେଇଟା କେବେଁ ମନ୍ଦ ହେବ ନାହିଁ । ସରକାର ତ ଜଣେ ଲୋକ ନୁହେଁ ।

ଉମା : ଅଚ୍ଛା ମୁଁ ତ ଘର-କୋଣର ବୋହୂ । ମୋ ମନକୁ ଗୋଟିଏ କଥା ଆସୁଛି, ପଚାରିବି ଦେଖି, କହିବ ?

ନରହର : ହଉ, କଅଣ ପଚାରିଲ ଦେଖି ।

ଉମା : ସରକାର ସରକାର ବୋଲି ସବୁ କହୁଚ ଯେ, ସରକାର କିଏ ? ଆଉ ଏଇ ଯୋଉ ବନ୍ଧ ପଡୁଛି ହୀରାକୁଦରେ ସେଥିରେ ତାଙ୍କର ଠଙ୍କା ଖର୍ଚ୍ଚ କରି ଲାଭ କଅଣ ?

ନରହର : ସରକାର ତ ଗଢ଼ିଛନ୍ତି ଏଇନେ ଆମ ଲୋକେ । ଆଉ ଏ ବନ୍ଧ ପଡ଼ି ଲାଭ ହେଲେ ଆମର, କ୍ଷତି ହେଲେ ସେ ବି ଆମର ।

ସ୍ନେହ : ବିଦେଶରୁ କେହି ତ ଏ ଲାଭ କ୍ଷତି ନିଆଦିଆ କରିବେ ନାହିଁ ?

ନରହର : ନା ।

ଉମା : କହୁଚ ତ ଆମ ସରକାର ଆମେ ଗଢ଼ିଛେଁ । ଆମରି କ୍ଷତି-ପାଇଁ ଭଲି ଆମ ଲୋକଙ୍କର କାହିଁକି ଏତେ ଜିଦ ? ଶୁଣୁଚି ବନ୍ଧରେ କୋଟିକୋଟି ଠଙ୍କା ଖରଚ ହେବ ? କାହିଁକି ଏ କାମ ସେମାନେ କରୁଛନ୍ତି ଯେ ? ନ ବୁଝି, ନ ବିଚାରି କଅଣ ଏଡ଼େ ବଡ଼ ଖର୍ଚ୍ଚ ଟାଏ ହଉଛି ?

ନର : କେଜାଣି ?

ସ୍ନେହ : ଏମିତି ହବ ନାହିଁ । ଅକାରଣରେ ଗୋଟେ ହୋ'ରେ ମାତି ଠଙ୍କା ଖର୍ଚ୍ଚ, ମନସ୍ତାପ । ଏସବୁର ଫଳ ନାହିଁ । ଆମର ସିନା ଖାଲି ଜମି ଯାଉଛି, ଲୋକଙ୍କର ଘର ଉଜୁ, ଗାଆଁ-ଭୂଇଁ ସବୁ ପୁଣି ଯାଉଛି ତ ।

ଉମା : କାମ ଭଲି କରୁଛି ବନ୍ଧ କଲଣି ?

ନର : କାଇଁ ?

ଉମା : ତେବେ ? ଥରେ ସେଠିକି ଚାଲ, ଦେଖି ଆସିବା, କଅଣ ହେଉଛି, କେମିତି ହେଉଛି । ତା ପଛେ ଯାହା କରିବାର, କରିବ । ମନ୍ଦ ବୋଲି ବିଚାରିଲେ ଆମେ ସବୁ ବି ବାହାରିବୁଁ ।

ସ୍ନେହ : ହଉ ହଉ ଆସ, ଝିଅାକଥାଟା ପାଟଶୋର ଗଲାଣି ପରା ! ଉଠ । ( ହାତ ଧରି ଉଠାଇଲେ ) ଯା ନୂଆବୋହୂ, ଠାଆ ବାଢ଼ିବଟି । ଚାଲ ଭାଇ, ସେଇଠି କଥା ହେବା ।

( ସମସ୍ତେ ଯିବାକୁ ଉଦ୍ୟତ )

---

## ଚତୁର୍ଥ ଦୃଶ୍ୟ— ( ଗ୍ରାମପଥ )

[ ଶମ୍ଭୁ ଓ ସଦାନନ୍ଦ କଥା ହୋଇ ହୋଇ ଆସିଲେ । ]

ସଦାନନ୍ଦ : ହଁ ହେ, ଆଜି ଥାଉଁ ଥାଉଁ ଏଭଳି ଅନ୍ଧଙ୍କୁ ଆଉ କୋଉଠି ଦେଖି ନାହିଁ ମୁଁ । ଏଗୁଡ଼ାକ କୁହୁଡ଼ିପଛରେ ଧାଇଁଛନ୍ତି ? ବାପ-ପଇସା ଶ୍ରାଦ୍ଧ କରି, ଥରକୁ ଥର ପରୀକ୍ଷାରେ ଫେଲ୍ ହୋଇ ଘରେ ବସି ନାରଣର ଆଉ କାମ କଛି ନାହିଁ । ଲୋକଗୁଡ଼ାଙ୍କୁ ଭେଳେଇ ତୁଚ୍ଛାରେ ବ ଚୁଦ୍ଧ ପ୍ରଗୃରରେ ଲଗିଯାଇଛି !

ଶମ୍ଭୁ : ହୀରାକୁଦ-ବନ୍ଧ ତିଆରି ହେଲେ ଯେ ଆମ ଓଡ଼ିଶା ହୀରା-କୁଦ ହେଇଯିବ, ଏଭଳି ଦୂରଦୃଷ୍ଟି ତ ଏ ଲୋକଙ୍କର ନାହିଁ ହୋ ସଦାନନ୍ଦ ବାବୁ ! କହିଲେ ମଧ୍ୟ ସେମାନେ ଶୁଣୁ ନାହାନ୍ତି କ ବୁଝୁ ନାହାନ୍ତି । ଲୋକେ ମନ୍ଦବାଗକୁ ଆଗେ ଠାଣି ହୋଇଗଲାପରେ ନାରଣ କଥାରେ ଏମାନେ ଭସିଯାଉଛନ୍ତି ।

ସଦାନନ୍ଦ : ଆଉ ସେଥିରୁ ନାରଣ ବ ବେଶ୍ ଦ'ପଇସା କମେଇ-ନଉଛି । ଆଜି ସଭା ହେବ, କାଲି ନେତାଏ ଆସିବେ—ମୂର୍ଖ ଲୋକେ ଖୁବ୍ ଚୂନ୍ଦା-ଭେଦା ଏଥିପାଇଁ ଗଣୁଛନ୍ତି ।

ଶମ୍ଭୁ : ହଇହେ ! ଏଇ ଲୋକେ ଦେଖୁ ନାହାନ୍ତି ଯେ ବନ୍ଧ-କାମ ଆରମ୍ଭ ହେବାରୁ କେତେ ଲୋକଙ୍କର ଅନ୍ନସଂସ୍ଥାନ ହୋଇଗଲା ।

ସଦାନନ୍ଦ : ଖାଲି କଅଣ ସେତିକ ? ଏ ହୀରାକୁଦ ବିଜୁଳିଶକ୍ତି ପାଇବା ଭରସାରେ କୋଉଠି ସିମେଣ୍ଟ୍ କୋଉଠି ଆଉ ଆଉ କେତେ ଲୋକଙ୍କର କେତେ ରକମର କାରଖାନାସବୁ ଫିଟିବାକୁ ବସିଲାଣି । ଏଥିରେ ଆମର ଦେଶର ଧନ ବଢ଼ିବ, ନା ଆଉ କଅଣ ?

ଶମ୍ଭୁ : ଦିନ ୧୫ ଭିତରେ ଲୋକଙ୍କର ବିଶ୍ୱାସ ଆସିଯିବ । ତୁମେ ବ୍ୟସ୍ତ ହୁଅ ନାହିଁ ସଦାନନ୍ଦ । ଶୁଣିଲି, ଯାହାଙ୍କ ଜମିବାଡ଼ି ବନ୍ଧତଳେ ଯାଉଛି, ତାଙ୍କୁ ଅନ୍ୟ ଜାଗାରେ ଜମିବାଡ଼ି ଯୋଗାଇଦେବାକୁ ଆମ ସରକାରରୁ ଶୀଘ୍ର ବ୍ୟବସ୍ଥା ହେଉଛି । ସେତିକ ଗୋଟେ-ଅଧେ ଗାଆଁରେ ହୋଇଗଲେ ଲୋକଙ୍କ ଧାରଣା ବଳେ ବଦଳିଯିବ । ତୁମେ ଅଧୀର ହୁଅ ନାହିଁ, ଚାଲ । ଗାଆଁରୁ ଦୁଇ ଚାରି ଜଣଙ୍କୁ ଡାକ ଠିକଏ ବସିବାକୁ ହେବ ପରା !

ସଦାନନ୍ଦ : ହଁ, ସେ ଚଠିକଥା ବିଚାରପାଇଁକି ନା ?

ଶମ୍ଭୁ : ହଁ ହଁ, ରାସ୍ତାଘାଟଆର, ପୋଖରୀ-ଖୋଳା ଏସବୁ କୋଉଠି, କେମିତି ହବ—ବିଚାର କରି ସରକାରଙ୍କୁ ଜଣାଇବାକୁ ପଡ଼ିବ ଯେ, ବହୁତ ଦିନୁ ଚଠିଟା ଆସି ପଡ଼ିଲାଣି । ଉଚ୍ଛୁର ହୋଇଯାଉଛି, ଆସ ଯିବା ।

———

## ପଞ୍ଚମ ଦୃଶ୍ୟ— ( ପାହାଡ଼ତଳ )

[ —ଗହଳିଆ ଆମ୍ବ ତୋଟା । ଦୂରରେ କୁଲିମାନଙ୍କ ପଲ୍ଲୀଘର । ଅଳ୍ପ ଦୂରରେ ଗଛଡାଳରେ ଗୋଟିଏ ଦୋଳି ଲାଗିଛି । ଦୋଳି ଖେଳରେ ମାତି ରହିଛନ୍ତି ଗୋଟିଏ ବାଳକ ଓ ଗୋଟିଏ ବାଳିକା । ବାଳିକାଟି ଦୋଳିରେ ବସିଛି, ବାଳକ ତାକୁ ପହଁଆଉଛି । ଦୁହେଁ ଗାଉଛନ୍ତି ପଦକୁ ପଦ ଗୀତ । ଦୁଇଟି ଯାକ ଆଦିବାସୀ ପିଲା । ଆଦିବାସୀଙ୍କଭଳି ବେଶ ତାଙ୍କର । ]

ଗୀତ

ପୁଅ (ଭୁଲୁଆ) : ଚତୁରୀ ରାଧିକା ଗୋଈ
'ଯମୁନା ନଈକୁ ଗାଧୋଇ ଯାଇ,
ଗାଧୋଇ ଯାଇ ଲୋ,
ବଂଇଶୀରେ ହେଲା ବାଇ ।

ଝିଅ (କଇନ୍ଥା) : ହଠ କର କହ୍ନା ଯାଏ
ନଈଗାଧୁଆକୁ ଅନାଇଁ ଥାଏ,
ଅନାଇଁ ଥାଏ ଲୋ,
କପଟ ନାଲଠାଏ ।

ଭଲୁଆ    ସେ ତ ନନ୍ଦରଜା ପୁଅ
ତାକୁ ଅପୂରୁବ କ ସୁନ୍ଦର ଝିଅ ?
ସୁନ୍ଦର ଝିଅ ଲୋ,
ରାଧା ଗୁଣଟି ନ କହ ।

କଇନ୍ଥା    ରାଧା ଘର ଭୂଆଷୁଣୀ
ନାଆଁ ଧରି ତା'ର କେ ଡାକିବ ପୁଣି ?
ଡାକିବ ପୁଣି ଲୋ,
ନନ୍ଦପୁଅ ଜାଣେ ଗୁଣି ।

ଭଲୁଆ    ଯା' ମନ ଯହିଁକି ରସେ
ପୋକସୁଙ୍ଘା ଫୁଲରେ ଭଅଁର ବସେ,
ଭଅଁର ବସେ ଲୋ,
କାହ୍ନୁ ଗୁଣିଆ କ ଦୋଷେ ?

କଇନ୍ଥା    ପୁରୁଷ ଭଅଁର ଜାତି
ମହୁ ଥିଲାତକ ସେ ରସିଥାଆନ୍ତି
ରସି ଥାଆନ୍ତି ଲୋ,
ସକାଳୁ ଉଡ଼ି ଯାଆନ୍ତି ।

ନେପଥ୍ୟରୁ : କଇନ୍ଥା ! କଲେ କୋଉଠି ତୁ ?

କଇନ୍ଥା : ଏଇଠି ଭଲୁଆର ମୋର ଦୋଳି ଖେଳୁଛୁ ଲୋ ମାଆ ।

କଇନ୍ଥା ମାଆ : କଲେ, ଦୋଳି ଖେଳୁଚ ବୋଲି ତମ ଦାଇଠାଙ୍କୁ ଭୋକ-ଶୋଷ ଆଉ ନାଇଁ ?

(ଦୋଳି ପଦଷ୍ଟିବା ବନ୍ଦ ହୋଇଗଲା)

କଇନ୍ଥା : ବୁଆ କାମରୁ ଆଇଲାଣି ? ଆସୁ, ମୁଁ ତାଆଙ୍କେ ଖାଇବି ।

କଇନ୍ୟା ମାଆ: ବେଳ ତ ହେଇଗଲାଣି । ଆଜି ହସ୍ତା ପାଳି ବୋଲି ମଠ ହେଲୁ କି କଅଣ ? ତୁ ଟିକେ, ଦୋଓଡ଼ା ଖାଇବୁ । କି ରେ ଢାଲୁଆ, ତୁ ଘରକୁ ଯିବୁ ନାହିଁ କି ?

ଢାଲୁଆ : ଯିବି । ମାଆ ପିଠା କରୁଥିଲା । କରିସାରୁ ଆଗ । ଗଲେ ତ ଖାଇବି । ମାଆ କହୁଥିଲା, କଇନ୍ୟା ଆମଘରେ ଖାଇବ ବୋଲି ।

କଇନ୍ୟା ମାଆ : (ହସି) ଆଉ ମତେ ଡାକିଲା ନାହିଁ ? ମାଆ କଅଣ ମନ କରିଛି କଇନ୍ୟାକୁ ବୋହୂ କରିନବ କି ରେ ? ଆଜିଠୁଁ ନାଆଁ ଦଉଚି ?

କଇନ୍ୟା : ( ଲାଜରେ ) ଉଁ ?

( କଇନ୍ୟା ବାପ ଆସିଛି )

କଇନ୍ୟା ମାଆ : କାମ ଉଠାଣି ବେଳ ତ କେତେବେଳୁ ଗଡ଼ିଗଲାଣି । ଆଜି କଅଣ ଏତେ ମଠ କଲ ?

କଇନ୍ୟା ବାପା : ହସ୍ତାପାଳି ପରା ? ଖୋଲ୍ ନେ, ରଖ ପେଞ୍ଚ ଠଙ୍କା । ଏ ପାଳି କାନତବାଟିବାକୁ ମୋ ମଜୁରି ବଢ଼େଇ ଦେଇଛି । ଆମେ ତ ବନ୍ଧକାମ କରୁଥିଲୁ । ଏ ପାଳି ଲୁହାକାମ କରିବାକୁ ପଡୁଛି । ତିନି ଠଙ୍କା ନେଖେଁ କରି ଦେଇଛି ।

କଇନ୍ୟା ମାଆ : (ହସି) ଏଥର ବଳକା ଠଙ୍କା ତକ ତେବେ ମୋର ! ରବିବାର ହାଟପାଳିକି କଇନ୍ୟା ପାଇଁକି ଖଣ୍ଡିଏ ନେଳୀ କସ୍ତା କିଣିବ ।

କଇନ୍ୟା ବାପ : ତୁ ଏବେ ସବୁ ରଖିଲୁ । କିଏ ତତେ ମନା କରୁଛି ? ( କଇନ୍ୟାମାଆ ଠଙ୍କା ନେଇ ଗଣିଲା ) ଶୁଣିଲଣି ନାଁ, ଆମ ଗାଁରୁ ଆହୁରି ଗୃହଘର ଉଠି ଆସିଛନ୍ତି ।

କଇନ୍ୟା ମାଆ : କୁଆଡେ ସବୁ ଆସିଛନ୍ତି ?

କଇନ୍ଥା ବାପା : ଏଇ ବନ୍ଧକାମ କରିବାକୁ ! ଗାଁରେ ତ ଆଉ ଏମିତି ଠାଣ ମଜୁରି ମିଳିବ ନାହିଁ ।

କଇନ୍ଥା ମାଆ : ସରକାରର ଉନ୍ନତି ହଉ । ଆମ ଗରିବଙ୍କୁ ପୋଷିନେଲା ଏ ନଅଣ୍ଟିଆ କାଳକୁ ।

କଇନ୍ଥା ବାପା : ଚୁପ୍ ଚୁପ୍, ଭୋକ କଲଣି ମ, ଯ୍ୱାର କଇଲଣିକୁ ରକାର ଅନେଇଁ ବସିଛି ? ଚୁପ୍ ।

କଇନ୍ଥା ମାଆ : ମଲ, ସେ ସବ ଦୁଃଖୀ-ରଙ୍କିଙ୍କ କଇଲଣ ! ନଷ୍ଟେଁ ଫଳିବ । ହଜାର-ହଜାର ଦୁଃଖୀ ଲୋକ ଏଇନେ ପାଞ୍ଚ ବର୍ଷ ତ ଆଗ ନଧୋକାରେ ଖାଇପିଇ ଚଳିଯିବେ । ରହି—ଥୋଇ ଜାଣିଲେ ଧନକପାଇଁ ସଞ୍ଚିପାରିବେ ।

କଇନ୍ଥା ବାପ : କାହିଁକି ମ, ପାଞ୍ଚ ବର୍ଷ କାହିଁକି ? ହୀରାକୁଦ ଉଠାଣି ତ ଠିକରପଡ଼ା ଅଛି । ତା ଉଠାଣି ପୁଣି ନରଜ ଅଛି ।

କଇନ୍ଥା ମାଆ : ଅଛି ଯେ, ସେସବୁ ଆଉ କଅଣ ଏଡ଼େ ବଡ଼ କାମ ? ଅଳ୍ପ ଲୋକ ଲାଗିବେ ସିନା ?

କଇନ୍ଥା ବାପା : ମଲ, ଆଉ ମାସ କେଇଠାରେ ତ ବଜୁଲକାରଖାନା ଚାଲୁହବ । ପଛକୁ ପଛ କେତେ କଳକାରଖାନା ବସିଯିବ । ଆଉ ଲୋକ କଅଣ ବାଲତରୁ କାମ କରିବାକୁ ଆସିବେ ?

କଇନ୍ଥା ମାଆ : ଏତିକବେଳକୁ କଟ୍ଟ-କଟ୍ଟ ସାଇତି ଆମର ମାଣେ-ଧ'ମାଣ ଭୂଇଁ କରିପକା ।

କଇନ୍ତା ବାପା : ଅଛୁ ତ ସେ କଥା ! ନୂଆ ଆବାଦୀ ଜମି କରୁ ପଡ଼ା
ନେବାକୁ ମନ ଅଛୁ । ଚାଲ୍, ପିଲା ଭୋକେଇବଣି ।
ଚାଆ ଲୋ କଇନ୍ତା !

କଇନ୍ତା ମାଆ : ଭାଲୁଆ ମାଆ ତାକୁ ପରା ପିଠା ଖାଇବାକୁ ଡାକରୁ ?

କଇନ୍ତା ବାପା : ହଉ, ପିଠା ଖାଇବାକୁ ଯିବେ ପଛେ । ମୁଁ ମିଠେଇ
ଆଣିଛୁ, ଆଗେ ଆମ ପଲ୍ଲୀରେ ଦହେଁ ଖାଆନ୍ତୁ ।

କଇନ୍ତା ମାଆ : ମିଠେଇ କୋଉଠୁ ମିଳିଲା ମ ବନ୍ଧପାଖେ ?

କଇନ୍ତା ବାପା : କାହିଁକି ? ଦୋକାନ-ବଜାର ବହୁତ । ଗୋଟାଏ ସହର
ବସିଗଲାଣି ଟି ! କେତେ ଲୋକ ନାଚ ଦେଖିବାକୁ
ଆସୁଛନ୍ତି ଚାରିଆଡ଼ୁ । ତୁ ଯାଉନୁ ଦିନେ । ଆ'ରେ
ଭାଲୁଆ, ଆମ ପଲ୍ଲୀକୁ ଆ ! ଦହେଁ ଫେର୍ ସାଙ୍ଗ
ହେଇ ଯିବ । ତମ ପଲ୍ଲୀରେ ପିଠା ଖାଇବ । ତୋ
ମାଆ କୁଆଡ଼େ ଭଲ ପିଠା କରିଜାଣିଛି ପରା ?

କଇନ୍ତା ବୁଆଲୋ, ମା' ସାଙ୍ଗେ ମୁଁ ଟିକଏ ବଜାର ଦେଖି-
ଯାଆନ୍ତି ।

କଇନ୍ତାବାପା : ହଉ, ଯିବୁ ଯିବୁ । ତୁ ଯିବୁ, ଭାଲୁଆ ଯିବ—
କା'ଲି । ଚାଲ୍ । (ସାଙ୍ଗରେ ନେଇ ଚାଲିଗଲା )



## ଷଷ୍ଠ ଦୃଶ୍ୟ— (କଚେରୀ ଘର)

[ହୀରାକୁଦ-ବନ୍ଧ ନିକଟ । ଗୋଟିଏ ଗ୍ଲେଟ ଅଫିସ୍‌ର ଖଣ୍ଡେ ପଟାରେ ଲେଖାହୋଇଛି 'କର୍ମ ଯୋଗାଣ କେନ୍ଦ୍ର' । ଅଫିସ୍ ଘରଟି ଭିତର ଆଡ଼କୁ । ସାମନାରେ ଗୋଟିଏ ବାଘମୁହାଁ । ଖଣ୍ଡିକେତେ କୌଚ୍ଚି, ମେଜ ଓ ଅଫିସ ସରଞ୍ଜାମ ଥୁଆହୋଇଛି । ବସିଛନ୍ତି ସତ୍ୟବାନ୍ ଓ ଶମ୍ଭୁବାବୁ । ଗୋଟିଏ ଧାଡ଼ିରେ ଠିଆହୋଇଛନ୍ତି ଜଣକେତେ କର୍ମପ୍ରାର୍ଥୀ]

ସତ୍ୟବାନ୍ : ହଁ, ତମ ନାଆଁ କଅଣ ? ( କଲମ ଓ ଖାତା ଧରି ପଚାରିଲେ )

ଜଣେ : ( ଆଗକୁ ଆସି ) ଆଜ୍ଞା, ପରଭା ।

ସତ୍ୟବାନ୍ : ଉଁ ହୁଁ -ଡାକନ୍ତି ସିନା ପରଭା ବୋଲି, ପୂରା ନାଆଁ ଟା କଅଣ କହ । ଲେଖାହବ ପରା ! ରେଜିଷ୍ଟର୍‌ରେ ଚଢ଼ିବ ।

ପରଭା : ଆଜ୍ଞା ନେଖ-ପଢ଼ ମତେ କିଛି ଆସେ ନାହିଁ । ଟିପ ଦେବ । ଆସ୍ତିବାଡ଼ି ତ ମୋର କିଛି ନାହିଁ । ଆଉ ରେଜିଷ୍ଟିରି କଅଣ କରିଦେବ ?

ଶମ୍ଭୁ : (ହସି) ଆରେ, ତମେ ରେଜିଷ୍ଟ୍ରି କରିଦେବ ନାଇଁ ହୋ ! ତମ ନାଆଁ -ଗାଆଁ ସବୁ ଲେଖା ହେବ ସରକାରୀ ଖାତାରେ । ତାକୁ ଇ ରେଜିଷ୍ଟ୍ରି ଖାତା କହନ୍ତି ।

ପରଭ : ବୋଇଲେ ? ପୁସ୍ତକରେ ମୋ ନାଆଁ-ଗାଆଁ ନେଖିବ ବାବୁ ? ହଁ, ନେଖନ ! ବଡ ଖେମୁଣ୍ଡି ତାଲୁକା, ପାଠପୁର ରହଣି ପରଭ ରେଡ଼ୁକା ।

ସତ୍ୟବାନ୍ : ଆଚ୍ଛା ଆଚ୍ଛା, କ କାମ କରିପାରିବ ତୁମେ? ମାଟିକାମ ?

ପରଭ : ଆଜ୍ଞା, ଯୋଉ କାମ ଦବ । ପେଟ ପୋଷ-ନାହିଁ ଦୋଷ୍ ।

ଶମ୍ଭୁ : ହଁ, ଶତକରା ଅଶୀ ଜଣ ତ ଏଥିରୁ ଓଡ଼ିଆ । ବାକ କିଛି ଛତିଶଗଡ଼ିଆ ଲୋକ । ଆଉ ୟାଙ୍କର ଆଡ଼ର ଲୋକମାନେ ତ ମାଟିକାମକୁ ବହୁ ।

ସତ୍ୟବାନ୍ : କଅଣ କହୁଚ ତୁମେ ପ୍ରଭାକର ?

ପରଭ : ଆଜ୍ଞା, ମୋ ନାଆଁ ପରଭ । ପରଭ ରେଡ଼ୁକା ।

ସତ୍ୟବାନ୍ : ହଉ, ହଉ, ତୁମେ କଅଣ ଏଇ କାମ କରିବ ତ ?

ପରଭ : କରିବ ଆଜ୍ଞା ।

ସତ୍ୟବାନ୍ : ବେଶ୍, ତମ ନାଆଁ ଲେଖାହୋଇ ରହିଲା । କାଲି ସକାଳ ୭ଟାକୁ ଆସ । କାମ ମିଳିବ । ( ଟିପା ଲେଖି ) ଏ ଟିପା ନଅ । ୧୭ ନମ୍ବର ଇଉନିଟ୍ ସରଦାରଙ୍କୁ ଦେଖାଇବ । ସେ ତମ ରହିବା ବନ୍ଦବସ୍ତ କରିଦେବେ । ବୁଝିଲ ? ଯାଅ !

ପରଭ : ( ଦଣ୍ଡବତ କରି ) ଆଜ୍ଞା ! ସିଲ ହଉଛି । ( ପ୍ରସ୍ଥାନ ) (ଅନ୍ୟ ଜଣେ ଶ୍ରମିକ ଆଗକୁ ଆସିଲେ—ତାଙ୍କ ନାମ ସୁକୁମାର )

ସୁକୁମାର : ସାର୍, ନମସ୍କାର ।

ସତ୍ୟବାନ୍ : ନମସ୍କାର । କଅଣ କହୁଚ ତୁମେ ?

ସୁକୁମାର : ଆମାଦେର୍, କି ହଲେ ସାର୍ ? ଆମ୍‌ରା ଚଲ୍ଲିସ୍ ଜନ୍ ଏସେଛି । ପାକିସ୍ଥାନ୍ ଏରିଆ ଥେକେ ଏଖାନେ ଆସାର୍ ଦୁ’ଦନ୍‌ଦଯ୍ୟେ ଗେଲ । କିଛୁ ଏକ୍‌ଟା-ବ୍ୟବସ୍ଥା ଟ୍ୟବସ୍ଥା···

ସତ୍ୟବାନ୍ : କଅଣ ଗୃହାନ୍ତ ଆପଣ ?

ସୁକୁମାର : ଆମରା ଲୋହାର୍ !

ସତ୍ୟବାନ୍ : ହଉ, କାମ ଯଥେଷ୍ଟ ଅଛି । ବିଶେଷତଃ ଆପଣମାନଙ୍କୁ ସାହାଯ୍ୟ ଦେବାକୁ ଆମେମାନେ ଆଗେ ଦେଖିବୁଁ । ( ଚିଠା ଲେଖି ) ଏଇ ଚିପାଠା ନେଇ ୯ ନମ୍ବର ସରଦାରଙ୍କୁ ଦେଖାକରନ୍ତୁ । ସେ ସବୁ ସୁବିଧା କରିଦେବେ । ଆପଣମାନେ କ’ଣ ପରିବାର ନେଇ-ଆସିଛନ୍ତି ?

ସୁକୁମାର : କେନ ଆର୍ ବଲେନ୍ ? ଦେଶେ ଥାକ୍‌ବାର୍ ଭିଟେମାଟି ପର୍ଯ୍ୟନ୍ତ ଯେ ଆର୍ ନେଇଁ ।

ଶମ୍ଭୁ : ଆହା-ହା, ସାତପୁରୁଷୀ ଘରବାର ଛାଡ଼ି···

ସୁକୁମାର : ବାଧ ହଯ୍ୟେ··ଯା’ ଅବସ୍ଥା ଓଖାନ୍‌କାର୍···

ଶମ୍ଭୁ : ହଁ, ତା’ନୋହିଲେ କି ଗାଆଁ ଭୂଇଁ ଛାଡ଼ି କେହି ସୁଖରେ ଆସେ ଏତେଦୂର ବିଦେଶକୁ ? ଆଚ୍ଛା, ଆପଣ ଚାଲନ୍ତୁ ମୋ ସଙ୍ଗରେ । ଆଗେ ମୁଣ୍ଡଗୁଞ୍ଜିବାର ବ୍ୟବସ୍ଥାଟା ତ କରି ଦିଏଁ । ( ହାତ ବଢ଼ାଇ ) କାଇଁ ଚିପାଠା ସତ୍ୟବାନ୍‌ବାବୁ ? ମୋଆଡ଼େ ଦିଅନ୍ତୁ ।

ସତ୍ୟବାନ୍ :( ଚିପାଦେଇ ) ଯାଆନ୍ତୁ, ଯାଆନ୍ତୁ ଟିକିଏ । ବିଚରା ବାସହୀନ । ଆହା ! ମୁଁ ଆପଣଙ୍କୁ କହିବ ବୋଲି ଭାବୁଥିଲି । ଟିକିଏ କଷ୍ଟ କରନ୍ତୁ ।

ଶମ୍ଭୁ : କଷ୍ଟ ତ ନୁହେ—କର୍ତ୍ତବ୍ୟ । ଯାଉଛି । ( ସୁକୁମାରଙ୍କୁ ) ଆସନ୍ତୁ । ( ଦୁହେଁ ଚାଲିଗଲେ । ଜଣେ ପିଅନ୍ ଆସି କହିଲା )

ପିଅନ୍ : ଆଜ୍ଞା, ମଟରରେ କିଏ ୩।୪ ଜଣ ଆସି ଆପଣଙ୍କୁ ଖୋଜୁଛନ୍ତି ।

ସତ୍ୟବାନ୍ : କିଏ ସେମାନେ ?

ପିଅନ୍ : କିଏ ବନ୍ଧ ଦେଖି ଆସିଲାପରି ଲାଗୁଛି । ବଡ଼ ଲୋକ-ଘରପରି ଦିଶୁଛନ୍ତି । ସ୍ତ୍ରୀଲୋକ ଦ'ଜଣ ଅଛନ୍ତି ସାଙ୍ଗରେ

ସତ୍ୟବାନ୍ : ଆଚ୍ଛା, ବସାଅ, ବସାଅ ମୋ ବସାରେ । ମୁଁ ଯାଉଛି । ଆଉ କାହାର କିଛି ଅଛି କହିବାକୁ ?
( ଗୋଳମାଳ କରି ଲୋକ କହିଲେ )

୧ ମ : ଆଜ୍ଞା ମୋ କଥା କଅଣ ହେଲା ?

୨ ୟ : ମୁଁ କାଲଠୁଁ ଆସିଛି ଆଜ୍ଞା ।

୩ ୟ : ଆମେ ବଢ଼େଇ-କାମ କରିବାକୁ ଆସିଥିଲୁଁ । ଆମମାନଙ୍କପାଇଁ କିଛି···

ସତ୍ୟବାନ୍ : (ଉଠି) ସମସ୍ତଙ୍କର ହବ । ବ୍ୟସ୍ତ ହୁଅ ନାହିଁ । ମୁଁ ଏଇ ଅଧଘଣ୍ଟାଏ ଭିତରେ ଆସୁଛି । ଟିକିଏ ଏଇଠି ଅପେକ୍ଷା କର । ( ଘର ଦେଖାଇ ଚାଲିଗଲେ । ଲୋକମାନେ ହୋ-ହା କଲେ । )

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ—(ନଈକୂଳ)

[ବନ୍ଧ ନକନ୍ଦର ଏକ ସ୍ଥାନ । କେତେଗୁଡ଼ିଏ ସ୍ତ୍ରୀ-ପୁରୁଷ ଗାଇଗାଇ ଗାଣ୍ଡୁଆରେ ମାଟି ଢଆ-ନଆ କରୁଛନ୍ତି । ]

### ଗୀତ

ପୁରୁଷ : ଝାଇଁ ମାରନେଲା ଖରା
ଗୃଳ ସଙ୍ଗାତୁଣୀ ଗାଧୋଇଯିବା,
ବେଳ ଗଡ଼ିଗଲା ପରା, କଳାମଲ୍ଲୀ ରେ । ୧

ସ୍ତ୍ରୀ : ନଈରେ ବାଲିଆ ମଲା
କାଲି ଜହ୍ନରାତି ଉଭେଇଗଲା
ସକାଳୁ ମନେ ପଡ଼ିଲା । ୨ ।

ପୁରୁଷ : ରୁଷି ବସ ନାହିଁ ଧନ
ଘୁମେଇପଡ଼ିଲା ମହୁଲବନେ
ଦେଖିଲ ତତେ ସପନ । ୩ ।

ସ୍ତ୍ରୀ : ପାଚଲା ନାହାଲି-ବେଲ
ଦଗାଦିଆ ବୋଲି ଜାଣି ନ ଥିଲି
ବାଟ ଗୃହିଁ-ଗୃହିଁ ମଲି । ୪ ।

ପୁରୁଷ : ଖରାକାଳ ହେଲା କାଳ
ଆସ ସଙ୍ଗାତୁଣୀ ପୋଛୁ ମୁଁ ଦେବ
ଝୋଟି-ଝୋଟି ମୁହଁ ଝାଳ । ୫ ।
ସ୍ତ୍ରୀ : ନାଉଳ-ଗୁଉଳ ଥାଉ
ଚହ୍ନିଛି ତୋତେ ରେ ସରୁସାବନା !
କେତେ ଭଣ୍ଡାଉଛୁ ଆଉ ? । ୬ ।

( ଗୀତଭିତରେ ଆସିଛନ୍ତି ନରହରି, ସ୍ନେହ ଓ ଉମା । କିଛି ବେଳ ଠିଆହୋଇ ହସି-ହସି ମୁହଁକୁ ମୁହଁ ଚାହିଁଲେ ! କାମ ଚାଲିଥାଏ । )

ସ୍ନେହ : ବାଃ, ତୁଣ୍ଡରେ ଗୀତ, ମୁଣ୍ଡରେ ବୋଝ ?

ନରହରି : ଏତିକି ଦେଖି ଚମକିପଡ଼ ନାହିଁ । ଆଗକୁ ଚାଲ, ଏଇଭଳି ଛେଳକୁ ଛେଳ ଶ୍ରମିକ ଗାଉଛନ୍ତି—କାମରେ ଲାଗିଛନ୍ତି ।

ଉମା : ଏମିତି କେତେ ଅଛନ୍ତି ?

ନରହରି : ହଜାରକରୁ ଉଣା ନୁହନ୍ତି । ଓଡ଼ିଶାରୁ, ଓଡ଼ିଶାବାହାରୁ କେତେ ଲୋକ ଆସି ଏହି ହୀରାକୁଦ-ବନ୍ଧ ଯୋଗରୁ ଦାନାକନା ପାଉଛନ୍ତି, ଦେଖିଲେ ଜାଣିବ । ଲୋକେ ଏଇ କାମ କରେଇ ଦେବନାହିଁ ବୋଲି ମେଳି ଚଳିଥିଲେ ତ ? ଆସ ଆସ, ଚାରିଆଡ଼ ବୁଲି ଦେଖିବାକୁ ଘଣ୍ଟାଏ ଦି'ଘଣ୍ଟା ଲାଗିଯିବ । ଆସ ବସାରେ ଟିକିଏ ଟିକିଏ...

( ସମସ୍ତେ ଚାଲିଗଲେ )

———

## ଦ୍ୱିତୀୟ ଦୃଶ୍ୟ—(କକ୍ଷ)

[ ସତ୍ୟବାନ୍‌ର ବସା—ବଙ୍କୁଲବନ୍ଧ ଓ ପଙ୍ଖା ଖଞ୍ଜାଯାଇଛି । ଖଣ୍ଡିକେତେ ସ୍ୱରକୁଦ-ବନ୍ଧ-ନିର୍ମାଣସମ୍ପର୍କୀୟ ନକ୍ସା ଓ ଫଟୋ କାନ୍ଥରେ ଟଣାହୋଇଛି । ଘରଟି ବେଶ୍ ପରିଷ୍କାର-ପରିଚ୍ଛନ୍ନ । ସତ୍ୟବାନ୍ ଓ ନରହରି ବସି ଗପ୍‌ସପ୍‌ କରି ଚା ଖାଉଛନ୍ତି । ଉମା ହସି-ହସି ପାନଡାଲା ନେଇ ଆସିଲା । ସ୍ନେହ ଆସି ତା ପାଖରେ ବସି ଗୁଆ କାଟିବାରେ ଲଗିଲା ]

ସତ୍ୟବାନ୍ : କଓ, ତରତର ହେଉଥିଲ ପରା ଘରକୁ ଯିବାପାଇଁ । ମୁଁ ଧନଟାଏ ଅଟକାଇଦେଲି ବୋଲି ବ୍ୟସ୍ତ ହେଉ-ପଡ଼ୁଛ, ନୁହଁ ? ରଗିଛ ତ ମୋଉପର, ମୁଁ ଜାଣେ ! କଅଣ ଫେର୍ ସେଇ ରାଗ ଅଛି ନା ମାନ୍ଦା କଚ୍ଛି ଉଣା ହେଲାଣି ?

ନରହରି : ନାହିଁ, ରାଗରୋଷ ଗୋଟାଏ କଅଣ ? ମତର ଟିକିଏ ଅମେଳ ସିନା ! ରଗିବ କାହିଁକି ?

ସ୍ନେହ : ନାହିଁ କେମିତି ? ନୂଆବୋହୂଙ୍କୁ ମୁଁ ସବୁ କଥା ନ କହେଁ, ତୁମେ ତାଙ୍କ କଥାରେ ହଁ ଭରି ନ ଆସ କି ତମ ଦୁଇଜଣଙ୍କ ଭେଟ ନ ହୁଏ ।

ଉମା : ଯେତେ ଅନର୍ଥର ମୂଳ, ସେଇ ନାରଣ । ଶାସ୍ତ୍ରରେ ନେତା ହେଇଯିବ ସେ, ବାଳୁଙ୍ଗାଟାଏ ! ବସିଛି, କେମିତି କୋଉବାଟୁ ସଜ ପଡ଼ିଲେ ଗୁରୁ ପଇସା

ଭିଆଇ ନବ । ସେଇ ଚିନ୍ତାରେ ଦିନ-ରାତି ଥାଏ ସେ ।
ସେମିତି ପଞ୍ଚାଏ ସୁବିଧାବାଦୀ ପୋଦ୍ଦଳା ଏଣ୍ଡ଼ୁ ଅ ଆମ ଏଠି
ଥାଇ ତ ସବୁ ସାରୁଛନ୍ତି । ରାତିକେ ହାଣ୍ଡିଏ କଣିବେ
ସେମାନେ ।

ସତ୍ୟବାନ୍ : ଗୁଡ଼ ସେସବୁ । ହୀରାକୁଦ-ବନ୍ଧ ତିଆରି ତ ନଜେ
ଦେଖିଲ ! ଆଉ ବାଟରେ ଆସିଲାବେଳେ ମହାନଦୀ-
ଉପରେ ନୂଆ ପୋଲଟା ଦେଖିଥିବ ତ ? କଅଣ
ମନକୁ ଆସିଲା ?

ନରହରି : ହଁ, ସେଇଟା ଗୋଟାଏ ବଡ଼ କାମ ହୋଇଛି ।

ସତ୍ୟବାନ୍ : ତା'ଛଡ଼ା ରେଲ ସଡ଼କ, ପୋଲ ତିଆରି ହୋଇଛି ।
ସେଇଟା ଆହୁରି ବଡ଼ କଥା । ଏଠିକି ସମ୍ବଲପୁରରୁ
ଜନପଦ ବୁହାହେବା ସଙ୍ଗେ-ସଙ୍ଗେ ରାୟପୁର-ବିଜୟ-
ନଗରଯାଏ ରେଲରାସ୍ତା ପଡ଼ିଯାଇପାରିବ । ପାଣିରୁ
ବିଜୁଳି-ଶକ୍ତି ତ ଏଇ ନିକଟରେ ହେଇଯାଉଛି ।
ଏଇକ୍ଷଣି ବିଜୁଳି ଇଉନିଟ୍‌କୁ ଛ'ଅଣା ଜାଗାରେ ହୁଏତ
ଛଅ ପଇସା ବି ଲୋକଙ୍କୁ ପଡ଼ିବ କି ନାହିଁ ସନ୍ଦେହ ।
ପାଣିକଳ, ଝୋଟକଳ, ଲୁଗାକଳ, କାଗଜକଳ, କେତେ
ରକମର କଳ-କାରଖାନା ଯେ ଶସ୍ତା ଆଉ ସୁବିଧାରେ
ଲୋକେ ବସାଇପାରିବେ, ତା'ର ଠିକଣା ନାହିଁ ।
ଟଙ୍କା ତ ସାଇତିଛ, ତିଆରି ହୋଇ ରହ । ଏତିକି-
ବେଳୁ ଜାଗା ଖଣ୍ଡେ-ଅଧେ ଯୋଗାଡ଼ କରି ପକେଇ
ରଖ । ପଛକୁ ବ୍ୟବସାୟ ତ ତୁମେ ସମ୍ଭାଳିପାରିବ
ନାହିଁ ହୋ, କହୁଚ କଅଣ ? କେତେ ଲୋକ ଯେ
ବଡ଼ ହେଇପଡ଼ିବେ ଆଉ ଓଡ଼ିଶା ଯେ କିଭଳି

ବଦଳିଯିବ, ସେଇଥିଁକୁ ଏଇନେ ସାଧାରଣରେ ଭାବିପାରୁ ନାହାନ୍ତି ।

ନରହରି : ସବୁ ହବ ଯେ, ଶହେ କି ଦେଢ଼ ଶହ ଊପରେ ଗାଆଁ ତ ବୁଡ଼ରେ ଯିବ—ଏ କଥାଟା କଅଣ ମିଛ ?

ସତ୍ୟବାନ୍ : ନାଇଁ ସତ, ଗୁଡ଼ାଏ ଗାଆଁ ପାଣିରେ ବୁଡ଼ିଯିବ । ସେଠା ଲୋକଙ୍କୁ ଘରଡିହ ଆଉ କୃଷିଜମି ପୁଣି ତା'ସଙ୍ଗକୁ କ୍ଷତିପୂରଣ ତ ମିଳିବ । ଆଚ୍ଛା, ଭାବୁ ନା ଟିକିଏ ଆଉ ଗୋଟିଏ କଥା—ଫି'ବର୍ଷ ମହାନଦୀରେ ସାତ କୋଟି ତ୍ରୈଶି ଲକ୍ଷ ଫୁଟ ପାଣି ହାବୁହାର ଦରିଆକୁ ତୁଚ୍ଛାଟାରେ ବୋହିଯାଉଛି । ସେ ପାଣିତକ ବନ୍ଧରେ ଅଟକାଇ ଠିକ୍ ସମୟରେ କାମରେ ଲଗାଇଲେ ସାତ କୋଟି ତ୍ରୈଶି ଲକ୍ଷ ଏକର ଜମି ବର୍ଷଯାକରେ ପାଣି ମଡ଼ାଇହବ ତ ! ତା'ଛଡ଼ା ଜଳଭଣ୍ଡାରରୁ କେନାଲ୍ କରିଦେଇ ଦୁଇ କୋଟି ଏକର ଜମିକି ପାଣି ଯୋଗାଇଦିଆଯାଇ-ପାରିବ । ତା'ଛଡ଼ା ୪୦ ଲକ୍ଷ କିଲୋଓ୍ୱାଟ୍ ବିଜୁଳିଶକ୍ତି ବାହାରିପାରିବ । ଏଥିଲାଗି ହୁଏତ ହଠାତ୍ କେତେକ ଲୋକଙ୍କର ଅବଶ୍ୟ କିଛି କ୍ଷତି ହେବ; କିନ୍ତୁ ପରିଣାମରେ··· ?

ନରହରି : ଆହା, ସେ ପରିଣାମ ତ କେତେ ଦୂରରେ ଅଛି !

ସତ୍ୟବାନ୍ : ନାଇଁ, ଦୂର କାହିଁକି ? ଏଇ ୨।୪ ବର୍ଷଭିତରେ ଦେଖ । କାମ ଠିଆହୋଇଯିବ । ଦୈର୍ଘ୍ୟରେ ପ୍ରାୟ ତିନି ମାଇଲ୍ ଉଚ୍ଚରେ ଦେଢ଼ ଶହ ଫୁଟେଯାଏ କଂକ୍ରିଟ୍‌ରେ ତିଆରି ଏକ ବିରାଟ ବନ୍ଧ । ତା'ଛଡ଼ା ଜଳଭଣ୍ଡାରର ଦୁ'ପାଖେ ସତର ମାଇଲ୍‌ର ମାଟିବନ୍ଧ ଦିଆଯାଉଛି ।

ସ୍ବାର ଉକ୍ତ ନାଗପାଶ ଷାଠିଏ ଫୁଟ । ସବୁ କାମ ସରିବାକୁ କୋଟି-କୋଟି ଟଙ୍କା ଅଟକଳ କରାଯାଇଛି । ବୁଝିଲ ?

ଉମା : (ଆଶ୍ଚର୍ଯ୍ୟ ହୋଇ) କୋଟି-କୋଟି ଟଙ୍କା ଖରଚ ହେବ ଏଇ ବନ୍ଧରେ ? ଆଚ୍ଛା, ରୋଜ୍ ଖରଚ କେତେଯାଏ ପଡ଼ୁଛି ଭଲ୍ ?

ସତ୍ୟବାନ୍ : ସେ ଖର୍ଚ୍ଚ କଥା ଛାଡ଼ିଦିଅ । ଖାଲି ମଜୁରିବାବତରେ ତ ହଜାର-ହଜାର ଦିନକୁ ଖରଚ ।

ନରହରି : ଯାହା ହେଉ, ଏତକ ତମଠୁ ଶୁଣି ଖୁସି ହେଲି ।

ସତ୍ୟବାନ୍ : ସେତେବେଳେ ଯାହା ଧରା ଯାଇଥିଲା, ଏଇକ୍ଷଣି ସମୟ ଯେମିତି ହେଲାଣି ଖର୍ଚ୍ଚ ମଧ୍ୟ କିଛି ବଢ଼ିଯାଇପାରେ ।

ନରହରି : ଆଚ୍ଛା ହଉ, ଯେ ତ ଯାହା ହବାର ହଉଚି, ହେଲାଣି ବି । କାରଣ ଯେ କହୁବୁଲୁଛି—ଆମ ଦେଶର ଟଙ୍କା, ଆମ ଗାଆଁ-ଭୂଇଁର କାମ ଅଥଚ ଆମ ଲୋକେ ଚାକିରି ନ ପାଇ ପାଇଲେ ଅନ୍ୟ ପ୍ରଦେଶର ଲୋକ । ଏ କଥାଟା କେତେ ଦୂର ସତ ?

ସତ୍ୟବାନ୍ : ହଁ, ସେ ତ ଗୋଟିଏ ଅସନ୍ତୋଷର କାରଣ ଲୋକଙ୍କ ଭିତରେ-ଭିତରେ ବରାବର ଖେଳୁଛି । ଆମ କାନରେ ବି ଏ କଥା ପଡ଼ୁଛି ।

ନରହରି : ତମର ବଡ଼ବଡ଼ଆଙ୍କ ଭିତରେ ଓଡ଼ିଆ କର୍ମଚାରୀ କେତେ ଜଣ ?

ସତ୍ୟବାନ୍ : ଠିକ୍ କଥା । ଆଉ ଟିକିଏ ତଳେଇ କରି କଥାଟାକୁ ବିଚାର କର । ତମ ଭିତରେ ସେଇ ଯୋଗ୍ୟତାକୁ ଆସ । କାମ ମାଡ଼ିବସ । ସେତେବେଳେ ଅବଶ୍ୟ

ଲଢ଼ିବାଟା ସୁନ୍ଦର ହେବ । ମୁଁ ତ ବଗୃହୁଛି, ଲଢ଼ିବାକୁ ପଡ଼ିବ ନାହିଁ । ଯେତେ ହେଲେ ଘରପୁଅ ଘରର ।

ନରହର : ତେବେ ଏଇଟା ଯେତେ ଶୀଘ୍ର ଲୋକଙ୍କ ମନରୁ ଦୂର ହୁଏ, ତେତେ ଭଲ ନୁହେଁ କି ?

ସତ୍ୟବାନ୍ : ସେଇଟା ସତ କହିଲ । ଦିନକୁ ଦିନ ସମସ୍ୟା ଯାହା ହେଉଛି, ଆମ ରୋଜଗାର ସେଇଭଳି ନ ବଢ଼ିଲେ ଦୁନିଆରେ ଓଡ଼ିଆ ଭିଖାରି ହୋଇ ବୁଲିବେ ଯେ । ଏଇତ, ଏଇ ବନ୍ଧ-କାମରେ ମୋଟ୍ ଖରଚ ଯାହା ଧରାହୋଇଥିଲା, ଜିନିଷର ଦରଦାମ୍ ବଢ଼ିବାରେ ଏ ଖର୍ଚ୍ଚ ବି ବଢ଼ିଯିବ ତ ନିଶ୍ଚୟ ।

ସ୍ନେହ : ତେବେ ଗୁଡ଼ିଏ ଲୋକ ତ କାମଦାମ ନ ପାଇ ବେକାର ହୋଇ ବସିଥାଆନ୍ତେ ଏଇନେ । ତାଙ୍କୁ ତ କାମ ଯୋଗାଇଦେଲ । ଖାଇପିଇ ସୁଖରେ ରହିଲେ ତ ।

ଉମା : ତାଙ୍କ ଜୀବନ ତ ସୁଖର । ନେବେ ନାଇଁ, ନେଞ୍ଜାର ନାହିଁ । ଖଟିଲେ, ଖାଇଲେ । ବେଶ୍ ଆରାମ ।

ସତ୍ୟବାନ୍ : ତୁମେ ବି ଖଟ, ଖାଅ—କିଏ ମନା କଲା ? ତୁମର ସେ ଡଙ୍ଗା-ବୋଇତ ପୁଣି ଚଳାଅ । ସବୁ ଦିନେ ତ ଏଥର ମହାନଦୀରେ ପାଣି ପାଇବ । ଖୁବ୍ ଦରକାର ପଡ଼ୁଛି ଏଇନେ ସିମେଣ୍ଟ୍ । ଦେଖି, ବେଗେ ଗୋଟାଏ ସିମେଣ୍ଟ୍-କାରଖାନା ଏଠି ଆରମ୍ଭ କରିଦେଲ । ବିଦ୍ୟୁତ୍‌ଶକ୍ତି ତ ଏଇ ୨।୪ ବର୍ଷପରେ ବେଧାର୍ ମିଳିବ ।

ସ୍ନେହ : ହଁ, ଦିନହିଁ ସାଙ୍ଗ ହେଇ କାରଖାନାଟାଏ କର । ଏମିତି ଚାକିରି ଆଉ କେତେ ଦିନ କରିବ ?

ସତ୍ୟବାନ୍ : ନା, ଏ ଗୃହକର ଆଶାରେ ତ ମୁଁ ଏଠି ପଶି ନାହିଁ । ମୋର ବ ଦିନେ ଭାଗ ଥିଲା । ତେଣୁ ପ୍ରକୃତରେ କଥାଟା କଅଣ ହେଉଛି, ଦେଖିବ ବୋଲି ଚଶୁପଶୁ ଲାଗି-ଯାଇଛି । ଗୃହକର ତ ଆମ ବୁନିଆଦିରୁ କେହି କେବେ କର ନାହିଁ । ପଶି କର୍ କନଷ୍ଟୋ ତ ଜାଣିଗଲି । ତା'ଛଡ଼ା ଆମର ଲୋକ ଯେତେ ପାଉଛି, ଭର୍ତି କରିପାରୁଛି । ଯେ କମ୍ କଥା ତ ନୁହେଁ ।

ଉମା : ହଉ, ସେ ତ ଯାହା ହବାର, ହେଲାଣି । ଏବେ ଦିହେଁ ମିଶି ଗୋଟେ କଛି କଳ-କାରଖାନା ବସାଇ ବ୍ୟବସାୟ ଯୋଡ଼, ବସ । ଘରଖଣ୍ଡିକ ତ ଆମର ଯାଉଛି । କୋଉଠି ଜାଗାଫାଗା ନେଇଛ କ ? କାରଖାନାପାଇଁ ଆଜଠୁଁ ଜାଗା ଦେଖ, ନଇଲେ ମଞ୍ଜି ପୋତିବ ତମେ, ଫଳ ଖାଇବ ଆଉ କଏ । ନେଡ଼ଗୁଡ଼ କହୁଣିକ ବୋହିଯିବ ।

ସତ୍ୟବାନ୍ : ଠିକ୍ କହୁଛୁ । ଏଇନେ ସିନା ଲୋକଙ୍କ ଆଖି ଫିଟି ନାଇଁ, ସେତେବେଳେ ଅନ୍ଧ-ଆଖିକ ବ ଜଳ-ଜଳ ଦୁଶିବ । ଆଗରୁ ସବୁ ଯୋଗାଡ଼ ନ ରଖିଲେ "ପଣ୍ଡିଆଣୀ ଲୋ କର୍ଣ୍ଣ ଗଲା, ପଣ୍ଡିଆଣୀ ଲୋ କର୍ଣ୍ଣ ଗଲା" ହବା କଥା । ଚାଲ୍ ଯିବା, ମୁଁ ଯୋଉଠି ଜାଗା ଠିକଣା କରିଛି, ଦେଖି ଆସିବା ।

ସ୍ନେହ : ମୁଁ ତ ସେଇଆ କହୁଚ । ଗାଡ଼ ତ ଅଛି; ଉଠ, ବାହାର । ଶିବ ମାଡ଼ିଆସିବ ପଛକୁ ।

ନରହର : ଭଲ କଥା । ଆମର ବ୍ୟବସାୟ ଚାଲିଲେ ହେଲା । ଉଠ, ତେମେ ସବୁ ଯିବ ତ ?

ଉମା : ହଁ ହଁ, ଆମେ ବ ଯିବୁ । ଘର କୋଉଠି ହବ, ଦେଖି ଆସିବୁ ।

ସତ୍ୟବାନ୍ : ଭଲ ହେଲା, ଚାଲ ।

ଶମ୍ଭୁ : (ପ୍ରବେଶ କରି ହସି) କଅଣ ଫେର୍ ଦୁଇ ଶଳା-ଭଣୋଇ କମ୍ପାନୀର ଫନ୍ଦାମନ ଯୋଡ଼ାଯୋଡ଼ ହୋଇଗଲାଣି କି ନାହିଁ ?

ଉମା : (ହସି) ନାଇଁ ମଉସା—ସେ ମଇଁଷି ଶିଙ୍ଗ ।

ସ୍ନେହ : ଯୁଝିଲାବେଳକୁ ଫନ୍ଦାଟା ଗୋଟା ହୋଇଯାଏ ଯେ !

ଶମ୍ଭୁ : ହଁ, ଯେତୁ ଯେ,ବାହାଦୂର ! କୁଆଡ଼େ ବାହାରିଛ କି ସବୁ ?

ସତ୍ୟବାନ୍ : ହଁ, ଟିକିଏ ଉହ ଜାଗା ଆଉ କାରଖାନାପାଇଁ ଥାନ ଦେଖିଆସିବୁଁ ବୋଲି···

ନରହରି : ଆପଣ ଚାଲନ୍ତୁ ଟିକିଏ, ଭଲ ହେବ ।

ଶମ୍ଭୁ : ହଉ ହେଲା, ଚାଲ । ଝିଅ, ତୁମେ ଯିବ ଟି ?

ସ୍ନେହ : ଆମେ ତ ସବୁ ଆଗେ ବାହାରିଛୁଁ ।

ଶମ୍ଭୁ : ଆସ ଆସ । ଭଲ ଯୋଗରେ ଦେଖାଦେଖି ହୋଇଗଲା । ସବୁ ତ ଏବେ ବୁଝିଗଲ ? ତେଲା ତେଲ ଏକାଠି ହୋଇ ପିଢ଼ିଆକୁ ଅଲଗା କରିଦେଇ ଏଥର କାମରେ ଲାଗ— (ଆଗେଇ ଯାଉଯାଉ କହିଲେ ପୁଣି) ହଁ, ଆଜି ତ ନରହରିବାବୁ ଯାଉ ନାହାନ୍ତି ଘରକୁ ?

ନରହରି : ହଁ, ଆଉ ରହିବ କାହିଁକି ?

ଶମ୍ଭୁ : ଉଁ-ହୁଁ, ଏଠି ଶ୍ରମିକମାନେ ପ୍ରକୃତରେ କେମିତି ଅଛନ୍ତି, କେମିତି ଚଳୁଚନ୍ତି, ସେତକ ତ ଦେଖିଗଲ ନାହିଁ । କାମରୁ ଛୁଟି ହେଲେ ରାତିରେ ଯାଇ ତାଙ୍କର

ମନର ଠିକ୍ ରୂପ ଦେଖାପଡ଼ିବ । କାଲି ଭୋର୍‌ରୁ ଅଣ୍ଡାରେ-ଅଣ୍ଡାରେ ଯିବ ବାହାରି ସବୁ ।

ସତ୍ୟବାନ୍ : ସତ କଥା । ଧନଯାକ ଖଟଣି ଯିନା ଦେଖିଛ, ରାତିଟା ତାଙ୍କର କଟେ କେମିତି, ସେତକ ତ ଦେଖିବା ଉଚିତ୍ । ରାତିଟାଏ ତ···ରହିଯିବ ଏଠି ।

ଶମ୍ଭୁ : ସମସ୍ତେ ମୋ ବସାରେ ରାତିରେ ଶାଗ-ଭାତ ମୁଠେ ଖାଇବ ।

ସ୍ନେହ : ନାହିଁ ମଉସା ! ଆପଣ କବିରାଜ ହୋଇ ଏ କଥା କମିତି କହୁଚନ୍ତି ? ରାତିରେ ପରା ଶାଗ ଦେହକୁ ଅମାରଗ ! ଆମେ ଖାଇଲେ କ୍ଷୀରି-ଖେଚଡ଼ି ଖାଇବୁଁ ।

ଶମ୍ଭୁ : (ହସି) ହଉ ହେଲା, ମା'ଆର ଯାହା ମନ, ସେଇଆ ହବ । ଆସ । (ସମସ୍ତେ ପ୍ରସ୍ଥାନ କଲେ) ।

---

## ତୃତୀୟ ଦୃଶ୍ୟ—

[ଗ୍ରାମିକ ପଲ୍ଲୀ ସମ୍ମୁଖସ୍ଥ ଗୋଟିଏ ଛୋଟିଆ । ଚନ୍ଦ୍ର ପକ୍ଷ ରାତ୍ରୀ । ଗଛ ତଳେ ଅଧା ଆଲୁଅ ଅଧା ଛାଇରେ କେତେକ ସ୍ତ୍ରୀ ପୁରୁଷ ନାଚ କରୁଛନ୍ତି, ଗୀତ ଗାଇ ମାଦଳ ବଜାଇ]

—ଗୀତ—

ଆନନ୍ଦେ କୁସୁମ୍ କଲି ଗାନ୍ଥି ବନମାଳ
ଯାର ଜଇନେ୍ୟ ଭୁଲି ଫୁଲ୍ ଗାନ୍ଥି ହାଲି ହାଲି
ଭୟ୍ୟା, ଆଜୁ ଆଜ୍ କାଲି
ବାନ୍ଧ ପ୍ରେମ ଡୋରେ—ଭୟ୍ୟା···

(ଗୀତ ଗାଇଗାଇ ନାଚକରୁଥିବା ବେଳେ ନରହରି ଶମ୍ଭୁ, ଉମା ଓ ସ୍ନେହ ଆସି ପହଞ୍ଚିଲେ । ହଠାତ୍ ନାଚ-ଗୀତ ବନ୍ଦ ହୋଇଗଲା )

ଶମ୍ଭୁ : ଆରେ, ତୁମେମାନେ ତମ ଆନନ୍ଦ ବନ୍ଦକଲ କାହିଁକି ? ଆମକୁସବୁ ଦେଖିକରି, ନାଁ ? ଛି, ଛି, ଆମେ ସଭିଏଁ ପରା ତମକୁ ଦେଖିବାକୁ ଆସିଛୁଁ । ଆମ ପାଖରେ ତୁମେ ନୂଆ, ନାଁ । ତମ ପାଖେ ଆମେ ନୂଆ ? ଅଉ (ନରହରି, ଉମା ଓ ସ୍ନେହଙ୍କୁ ଦେଖାଇ) ଏଇ ନୂଆ ଲୋକଙ୍କୁ ଦେଖି ଲାଜ କରୁଛ ନାଁ ? ଆଚ୍ଛା ମୁଁ

ଚହ୍ନାଇ ଦଉଚ । (ନରହରଙ୍କୁ ଦେଖାଇ) ଏ ବାବୁ ହଉଚନ୍ତ ଆମ ଏ ଅଞ୍ଚଳର ଜଣେ ବଡ଼ ସାହୁକାର ପୁଅ—ତମ ସତ୍ୟବାନ ବାବୁଙ୍କର ଶଳା, ପୁଣି ଭଣେଇ ।

(ମଜୁରିଆ ମାନେ ହସିଲେ)

ଜଣେ : (ହସି)ଏ କେମିତ କଥା ବାବୁ ? ଶଳା ଫେର୍ ଭଣେଇ !

ଶମ୍ଭୁ : ସେମିତ ଗୋଟେ କଥା ହେଇଛି ତ । ସେ ବାବୁଙ୍କ ନାଆଁ ନରହର ବାବୁ ! ସେ ସତ୍ୟବାନ ବାବୁଙ୍କ ଶଳା—ପୁଣି ସତ୍ୟବାନ ବାବୁ ତାଙ୍କ ଶଳା । ପାଲଟ କନିଆଁ ହେଇଛି । (ସ୍ନେହକୁ ଠାର ) ଏଇ ହେଉଛନ୍ତ ନରହର ବାବୁଙ୍କ ଭଉଣୀ ଆଉ ( ଉମାକୁ ଠାର ) ସେ ହେଉଛନ୍ତ ସତ୍ୟବାନ ବାବୁଙ୍କ ଭଉଣୀ ।

ଜଣେ ସ୍ତ୍ରୀ ଲୋକ : ଭଲହେଲା ! ଦହେଁ ଦୁହିଁଙ୍କ ନଣନ୍ଦ ! ପୁଣି···

(ହସିଲା)

ଶମ୍ଭୁ : ସମସ୍ତେ ଆସିଛନ୍ତ ହୀରାକୁଦ-ବନ୍ଧ ଦେଖି । ମୁଁ ଡାକ ଆଣିଛି ସେମାନଙ୍କୁ ତମ ଘରକୁ । ଏମାନେ ଆଜ ତମର କୁଣିଆଁ—ଏଥର ତମର ତୁମେ ତାଙ୍କ ଚରଗୁ କରୁଥା' ।

(ସମସ୍ତେ ହସିଲେ)

ଜଣେବୁଢ଼ା : ରଜା ପୁଅକୁ ଖଜା ଅପୂରୁବ ? ଆମେ ଆଉ କ ଚରଗୁ କରିବୁ ତାଙ୍କର ? ଆମର ଗୀତ ନାଚ ଦେଖେଇଦବା ନିକଏ । ଗୁଲରେ ପିଲାଏ ! ମୁଇଁ ମାଦଲ ଧରେଁ । ଆମର ତ କୁଚୁଟିକୁରୁଗୁ ନାଇଁ । ଗଛତଳେ ପଥରରେ ସବୁ ବସ ଏଇଟି ( ମାଦଲ ଧରି ବଜାଇବା ଆରମ୍ଭ କଲା । ଶମ୍ଭୁ ପ୍ରଭୃତ ବସିଲେ । ବାଦ୍ୟ ସହିତ ନାଚ-ଗୀତ ଆରମ୍ଭ ହେଲା । )

( ଗୀତ )

ନଉତନ ପୁକୁରେର୍ ଆଡ଼େ କୋନ୍ ବନ୍ଧୁ ! ଭାତ୍ ରାନ୍ଧେ ଖାଏ ?
ଚିଲ୍ଏ ସାମାଇଲ୍ ବୁଢ଼ା ସାଁପ ଲୋ !
ଓ ଦାଦା, ଦେଖ୍ ଲୋ, ଆମାର୍ କରେ ।

ସତ୍ୟବାନ : ହଉ, ହଉ, ବେଶ୍ ହେଲା । ଏତିକି ଥାଉ, ଏତିକି ଥାଉ । ତମକୁ ସବୁ ବେଶୀ ଖଟାଇବା ଉଚିତ ନୁହେଁ । ଦିନଯାକ ଖଟିଛ ।

ନରହରି : ( ପାଞ୍ଚଟି ଟଙ୍କା ଦେଇ ) ନଅ, ତୁମେମାନେ ଭୁଜା ଖାଇବ । ( ବୁଢ଼ା ହସି ହସି ଟଙ୍କା ନେଲା । ସମସ୍ତେ ଜୁହାର କଲେ ।)

ସତ୍ୟବାନ : ଆଉ କିଏ ସବୁ ଆସନ୍ତୁ ।

ଜଣେ : ( ଦେଖଣାହାରି )—ଆମ ସାଇର କେଳାକେଳୁଣୀ ନାଚ ଟିକିଏ ଦେଖିବ ବାବୁ ! ଡାକି ଆଣେ ।

ଶମ୍ଭୁ : ହଉ ଯାଅ, ବେଗେ ଡାକି ଆଣ । (ଲୋକଟି ଦଉଡ଼ିଗଲା)

ଉମା : ବଡ ଆନନ୍ଦ ଲାଗୁଛି ଏମାନଙ୍କୁ ଦେଖି । ତୋଟାତଳେ, ପଲ୍ଲା ମାରି, ଗୋଟିଏ କୁଟୁମ୍ବ ଭଳି ଆନନ୍ଦରେ ରହିଛନ୍ତି । ଦିନ ତମାମ୍ ଖଟଣୀ—ରାତିରେ ସବୁ ଖଟଣୀ ତାଙ୍କର ପାଶୋରିଦେଉଛି ଏଇ ଗୀତ-ନାଚ ।

ଶମ୍ଭୁ : ଆଲୋ ମାଆ ! ସଙ୍ଗୀତର ଗୁଣକୁ କଅଣ ଜାଣି ମଣିଲୁ ? ଏବେ ସିନା ଆମର କେତେଜଣ ପାଠୁଆ ସେକଥା ବୁଝୁ-ନାହାନ୍ତି ! ଭୁଲୁଛନ୍ତି ହାଉହାଉ ହଉଛନ୍ତି ! ବେଶୀ ଖଟ—ବେଶୀ ଚଷ—ବେଶୀ କାମକର ବୋଲି ହୁରି ପକାଉଛନ୍ତି । ବାକି ଖାଲି ପେଟ-ଜିଆଣିରେ ଦେହ

ଖଟଣୀ କୋଇପାରିବ ନାହିଁ ଲୋ ଝିଅ! ମନ-ଝିଆଣିରେ ବହୁତ କାମ ଉଠେ। ସଙ୍ଗୀତ ହେଲା ମନର ଖାଦ୍ୟ।

ସ୍ନେହ : ହଁ, କା'ଲି ପରା ଆମେ ଦେଖିଲୁଁ—ମାଟି ଉଠାଉ ଥାଆନ୍ତି, କେତେଶ ମୁହଁରେ ଗୀତ ଗୁଞ୍ଜୁଥାନ୍ତି। ସତରେ ଯେମିତି ସେମାନଙ୍କୁ ପରିଶ୍ରମଟା ମୋଟେ ବାଧୁନାହିଁ।

ସତ୍ୟବାନ : ଗୀତଟା ଦେହର ବାଧା ପାଶୋରାଇଦିଏ। ଚଷାକୁ ଦେଖ—ହଳ ଚଳାଉଥିବ, ଗୀତ ପଦେ ପଦେ ତା'ସଙ୍ଗରେ ଗାଉଥିବ। ଶଗଡ଼ଆକୁ ଦେଖ—ଗୀତ ଗାଇଗାଇ ବଳଦ ଅଡ଼େଇ ଚାଲିଛି। ବାଟ ଜଣା ପଡୁ ନାହିଁ ତାକୁ।

ଶମ୍ଭୁ : ସବୁ କଥା ସେଇଆ। ବଡ଼ବଡ଼ଆଫିସ ବାବୁଙ୍କର ଲୁବ ଘର କରି ସଞ୍ଜହେଲାଠୁଁ ଦି'ତିନ ଘଣ୍ଟା ମନ ବହଲେଇ ନେବେ। ଦେହଟା ଗୋଟେ ଆଉ କଅଣ? ଇଞ୍ଜିନ୍ ତ! ତାକୁ ଟିକିଏ ବିଶ୍ରାମ ଦେବା ଦରକାର। ପେଟେ ଗିଳିଦେଇ ଫାଁ ଗାଲି, ଲ'ଥ କରି ଶୋଇ ପଡ଼ିଲେ, ସେ ବିଶ୍ରାମ ନୁହେଁ। ସେଇଟା କେବଳ ଥକ୍କା ମେଣ୍ଟାଇବା କଥା ସିନା! ଆଉ ଦେହକୁ କାମ କରିବାର ବଳ ବଳ ସୁଧା, ଆଉ ମନ—ଏତିକ ପାଇବାକୁ ନିର୍ଦ୍ଦୋଷ ଆନନ୍ଦ ଦରକାର। ସେତିକ ପୂରି ରହିଛି, ଏଇ ସଙ୍ଗୀତ ଭିତରେ। ଲୋକେ ଖାଲି ତାକୁ ହେୟଜ୍ଞାନ କରନ୍ତି, ନଜାଣି ନଶୁଣି।

ଉମା : ହେଇଟି ତ—ଆଦିବାସୀଙ୍କ ଭିତରେ ଏଇ ଗୀତ-ନାଚ ଯେମିତି ବେଶୀ—ସେମାନେ ସେମିତି ବେଶୀ ପରିଶ୍ରମୀ!

ଶମ୍ଭୁ : ଖାଲି ଖଟି ବସିଲେ ବେଗେ ମଣିଷ ମରିଯିବ। ସଙ୍ଗୀତ ଲୋକର ପରମାୟୁ ବଢ଼ାଏ। ଏକଥା ଯୁଗର ଯୁଗେ ପୁରାଣ ଶାସ୍ତ୍ରରେ ଲେଖା ଅଛି, ବୈଦ୍ୟ ଶାସ୍ତ୍ରରେ ବି ଅଛି। ଦେଖା

ଯାଉଛନ୍ତି ମଧ୍ୟ ସେଇଆ। ହେଲେ, ଆମ ଲୋକେ ତ ଅବୁଝା ! ଥୋକେ ନାକ ଟେକନ୍ତ ସଙ୍ଗୀତ ନାଆଁ ପଡ଼ିଲେ ।

ସ୍ୱେନ : ନପଢ଼ ନରସ ଲୋକ ସେଗୁଡ଼ା ।

ନରହର : ଦେଖୁନା ? ନାଆ ଉପରେ ନାଉରୀ ଗୀତ ପଦେ ପଦେ ଗାଇ ଆହୁଲା ଚଲାଉଥାଏ ତ ! ଆଉ ଆଉ ଦେଶରେ ସଂଗୀତର ଆଦର ଦେଖ । ସ୍ୱାଧୀନ ଦେଶରେ ସବୁ ଆଡ଼କୁ ନଜର ନଦେଲେ ସିନା ଦେଶ ଜାତିର ଉନ୍ନତି ହେବ ? ହଁ, କହିବ ଆମର ଖାଇବାକୁ ନାହିଁ । ତା' ସତ ହୋଇପାରେ । ମାତ୍ର ଖାଇବା ଯୋଗାଡ଼ କରିବାକୁ ଯେଉଁ ଖଟଣୀ—ତା'ପାଇଁ ପ୍ରେରଣା ଦେବ କିଏ ? ମନବଳଟା ଯେ ବଡ଼ବଳ—ସେତକ ତ ବୁଝିବା ଦରକାର ।

( କେଳା କେଳୁଣୀ ଆସି ପ୍ରଣାମ କଲେ )

ଶମ୍ଭୁ : କିରେ, ତମମାନଙ୍କ ଘର ...... ?

କେଳା : ଆଜ୍ଞା, ଏଇ ଓଡ଼ିଶା—ଖଣ୍ଡପଡ଼ା ଚକଡ଼ାରେ ।

ଶମ୍ଭୁ : ହଉ ହଉ, ଦେଖି; ତମମାନଙ୍କ ଗୁଣ ଟିକିଏ ଦେଖାଇଲ ।

କେଳା : ହଇ, କି ଗୁଣ ଆଜ୍ଞା ! ଦିନଯାକ ତ ଖଟୁ । ଏଇ ରାତିରେ ଟିକିଏ ହସି, ଖେଳି, ଗାଇ, ନାଚି ମନଟାକୁ ଆମର ଫେରାଇ ନଉଁ । ଫେର୍ ଆରଦିନ ସକାଳକୁ ତାଜା ହୋଇ, ଧାଉଁ କାମକୁ । ଏଇକଥା ।

ନରହର : ଶୁଣିଲେ ଶମ୍ଭୁ ବାବୁ ?

ଶମ୍ଭୁ : ଆହେ, ମତେ କଅଣ ଶୁଣାଉଛ ? ଯିଏ ଶୁଣିଲେ କିଛି ଫଳ ହେବ ତାଙ୍କୁ ଶୁଣାଇଲେ ସିନା ହୁଅନ୍ତା । ହଉ, ହଉ, ଆରମ୍ଭ କର ।

( ଗୀତ ଓ ନାଚ ଆରମ୍ଭ ହେଲା । କେଳା ଘୁଡ଼ୁକ ବଜାଇଲା, କେଳୁଣୀ ନାଚିଲା )

( ଗୀତ )

ଭଲ ଜଣେ ତୁ ଆରେ ନୂଆ ନାଗର !
ଗଲା ରଜନୀ ଜାଳିଜାଳି ଜାଗର । ୦ ।
କଣ୍ଠ ଦେଇ ଜଟିଳୁ
ଖଣ୍ଟ ଘଣ୍ଟା ପିଟିଲୁ ।
ଶଠ ଜଣେ ତୁ ବୋଲି
ମୁଁ ତ ଜାଣି ନ ଥିଲି
ଆଣ୍ଠପଣ ଭଙ୍ଗିଲୁ ଏଥର । ୧ ।
ଅନାଇଁ ସାରା ନିଶି
ତୋ ନାଁ ମୁଁ ଘୋଷି ଘୋଷି
ବନାଇ ଥିଲି ପାନ
ମନା ନ କଲୁ ଧନ,
ମୁଖ ନ ଦେଖା ଆଉ ଆଖି ଆଗର । ୨ ।

( ସମସ୍ତେ କରତାଳି ଦେଲେ । ନରହରି ଏମାନଙ୍କୁ ମଧ ପାଞ୍ଚଟଙ୍କା ଦେଲେ । )

ନରହରି : ନିଅ, ମିଠେଇ ଖାଇବ ।

ଶମ୍ଭୁ : ବାଃ, ବାଃ, ବେଶ୍ କଲ । ବଢ଼ିଆ ! ଆଉ ଦିନେ ପୁଣି ଆସିବା । ଭଲକରି ଦେଖିବା ଶୁଣିବା ତମ ନାଚଗୀତ ।

( ଉଠିଲେ ସମସ୍ତେ )

ସମସ୍ତେ : ଜୁହାର, ଜୁହାର ଆଜ୍ଞା ।

ସତ୍ୟବାନ : (ହସି) ଜୁହାର, । ରାତି ଆଜି ବେଶୀ ହେଲାଣି, ଯାଅ ବିଶ୍ରାମ କର ।

**ବି ଷ୍କ ମ୍ଭ କ**

# ପଞ୍ଚମ ଅଙ୍କ

## ପ୍ରଥମ ଦୃଶ୍ୟ—(ନଦୀ ତୀର)

[ ଭୋର ବେଳ । ଦୂରରୁ ଶୁଣାଯାଉଛି ନାଉରିଆଙ୍କ ଗୀତ-ପକ୍ଷୀମାନେ ଡ଼ାକ ଛାଡ଼ୁଛନ୍ତି । ]

( ଗୀତ )

ତୋଟା ଗହଳରୁ କଜଳପାତିଆ
ଡ଼ାକ ଛାଡ଼ିଲାଣି ଭାଇ,
ଶିତୁଳିଆ ବାଆ ସୁଲୁ ସୁଲୁ ବହେ
ଭରା ମହାନଦୀ ପାଣି ଛୁଇଁ ତ
ଦିଏ ଦେହ ଥରାଇ,
ନିଦ ଅମଳ ଦେଲା ଛଡ଼ାଇ ।

( ନାଉରିଆ ଶଙ୍କର, ଗୀତ ମଝିରେ ନଈ କୂଳେକୂଳେ କଅଣ ଖୋଜିଲା ପରି, ଠାଏ ଠାଏ ଅଟକି ଅଟକି ଗଛଆଡ଼କୁ ଥରେ ଥରେ ଚାହିଁ ପୁଣି ଆଗେଇ ଆସୁଛି । ଗୀତ ପୂର୍ବପରି ଶୁଭୁଥାଏ—ସ୍ୱର କ୍ରମେ ଦୂରରୁ ନିକଟବର୍ତ୍ତୀ ହେଉଥାଏ )

(ଗୀତ)

ମୂଣ୍ଡିଆ ଶିଖରେ କଏ ଏଇବ୍ଦନୁ
ଫଗୁ ଖେଳିଲାଣି ଅନା
ଫଗୁଣ ପୂନେଇଁ ପାଞ୍ଚମାସ ଅଛି
ଆଜି, କାର୍ତ୍ତିକ ପୂନେଇଁ ସିନା ତ
ରାତି ସପନ ମାୟା
ଛୁଟିନାହିଁ ସେ ଏଡ଼କ ବାୟା ରେ ।

( ଶଙ୍କର ଗୋଟିଏ ସ୍ଥାନରେ ଥରେ ନଈ ପାଣିକି ପୁଣି ଥରେ କୂଳକୁ ଚାହିଁ ଠିଆହେଲା । କିଛି ସମୟ ପରେ ମୁହଁର ଦୁଇ ପାଖରେ ହାତ ପାପୁଲି ଲଗାଇ ବଡ଼ପାଟିରେ ଡ଼ାକିଲା )

ଶଙ୍କର : ଓ······ହୋ ······

( ଦୁଇଥର ଡ଼ାକିଲା )

ନେପଥ୍ୟ : ( ସେହିପରି ନଈଆଡ଼ୁ ଡାକର ଉତ୍ତର ମିଳିଲା )
ଓ. ହୋ·········

ଶଙ୍କର : ବାଆଁ ମଙ୍ଗ ମୋଡ଼ିଦେଇ ଆସ ହୋ ···ବାଆ ମଙ୍ଗ···
( ଚାହିଁ ରହିଲା ନଈ ଆଡ଼କୁ । ଇତି ମଧ୍ୟରେ ନରହର ଆସି ପହଞ୍ଚିଲେ, ଶଙ୍କର ପଛପଟରୁ )

ନରହର : କରେ ଶଙ୍କର ! ( ଡାକ ଶୁଣି ଶଙ୍କର ହଠାତ୍ ପଛକୁ ଫେରି ଚାହିଁଲା—ଟିକିଏ ହସିଦେଇ ନମସ୍କାର କଲା )

ଶଙ୍କର : ଦଣ୍ଡବତ ବାବୁ ।

ନରହର : ଦଣ୍ଡବତ, ଦଣ୍ଡବତ । ହେଇଗଲା ସବୁ ?

ଶଙ୍କର : ରାତି ଗୋଟାକଯାକ ଲାଗିଗଲା । ଥରଥର କରି ଜଣେ ଜଣେ ମାଲ୍ ଆଣୁଛନ୍ତି । ଟିକିଏ ଧୁମ ଲାଗିଆସିଲା

ବେଳକୁ ରଥିଆ, ଦାମିଆ ଆସି ଡାକ ପକେଇଲେ;
ଗୃହଖଣ୍ଡ ଶଗଡ଼ରେ ବିରି, ମୁଗ ବୋଝେଇ କରି ।
ଡଙ୍ଗାରେ ଲଦୁ ଲଦୁ ରାତି ପାହର ଫାଟିଲାଣି । ଆଉ
ବ କିଏ କେମିତି ଆସିଥିଲେ । ନାଉରିଆଙ୍କୁ ବୋଝେଇ
କରିବାକୁ କହିଦେଇ ମୁଁ ଆଗରେ ଆସିଲି ବାହାରି
ଡଙ୍ଗା ଖଟେଇବା ଥାନ ଠିକଣା କରିବାକୁ ।

ନରହରି : କଅଣ ଏଇଠି···ଏଇ ଘାଟରେ ଡଙ୍ଗା ଲଗେଇବାର
ହେଲା ?

ଶଙ୍କର : ଆଜ୍ଞା ! ଆପଣ ଏତକ ପାହାନ୍ତରୁ···

ନରହରି : ସେ କଥା ଆଉ କାହିଁକି ପଚାରୁଛୁ ? ରାତି ତିନଟାରୁ ଉଠି
ମୁଁ ଖାଲି ଛଟପଟ ହେଉଛି । ଆଜି ନାଆ ବନ୍ଦାଣ ।
ନାହାକ ଲଗ୍ନ ଧରି ଦେଇଛନ୍ତି ସକାଳ ଆଠଟାକୁ
ଡଙ୍ଗା ଛାଡ଼ିବା କଥା । ମହା ଚନ୍ତାରେ ପଡ଼ିଥିଲି । କାଲି
ତ ମକୁ ସବୁ ତକେଇ ତକେଇ କାହାରିଠାରୁ କିଛି ବାତିନ
ପାଇଲି ନାହିଁ । ଉପରୁ ଡଙ୍ଗା ଆସିଲା କି ନାଇଁ, ମାଲ୍
ବୋଝେଇ ସରିଲା କି ନାଇଁ, ଡଙ୍ଗା କୋଉଠି ଖଟେଇଲ,
ଭାବି ଭାବି ଦେଖିବାକୁ ଆସିଲି ବାହାରି ।

ଶଙ୍କର : ଆଜ୍ଞା, ଠାବ ଠଉରେଇବାକୁ ନାଆ ଛାଡ଼ିଦେଇ ବାହାରି
ଆସିଥିଲି—କୋଉଠି କାଳା ଗାଡ଼ିଲେ ନାଆ ବାନ୍ଧିବାକୁ
ସଜ ହବ ବୋଲି ସେ, ଏବେ ଆଉ ତ ସେ ଦିନକାଳ
ନାଇଁ । ନଈ ପେଟରେ ଭରଭରା ପାଣି । ଗୁଠକୁ ଲାଗି ତ
ଧାରି ଅଛି । ଏଇଠି ନାଆ ଖଟେଇବାକୁ ଡାକ
ଦେଉଥିଲି ।

ନରହର : ଆଜି ପାହାନ୍ତାକୁ କାମ ସରବ ବୋଲି ଯମାରୁ ମନରେ ମୋର ବିଶ୍ୱାସ ନ ଥିଲା ।

ଶଙ୍କର : କାହିଁକି ? ମୁଁ ପରା ବାଇଦା କରିଥିଲି ? ଦ'ଖଣ୍ଡ କୋଣାଳିକ ବାରଜଣ ଲେଖେଁ ନାଉରିଆ—ସବୁଗୁଡ଼ାକ ଭେଣ୍ଡିଆ । ମାଲ ବୋଝେଇକରିବାକୁ କେତେବେଳ ଲାଗନ୍ତା ଆଉ ? ଉପାଣି ଡଙ୍ଗା—କାତ ଧଇଲେ ଆଖି ପିଛୁଳାକେ ଖଣ୍ଡେ ବାଟ ଉଡ଼ିହୋଇ ଆସୁଚି । ଠାଏ ଠାଏ ତ କାତ ପାଇବାକୁ ନାହିଁ । କେଳୁଆର. ଆହୁଲା ଭିଡ଼ିବାକୁ ପଡ଼ୁଚି । ଆଗବେଳପରି ନଈପେଟ କଅଣ ଖାଙ୍କା ପଡ଼ିଛି ଯେ, ହରଣୀ ଖୋଳି ଖୋଳି ଝାଳନାଳ ହୋଇ ନାଆ ପେଲିପେଲି ଆଣିବାକୁ ପଡ଼ିବ ?

ନରହର : କେତେବେଳ ସରିକି ନାଆ ଭୁଠ ଧରିବ ବୋଲି ବିଚାରୁଛ ଯେ ?

ଶଙ୍କର : ହଁ, ଆଉ ଘଡ଼ିଏ ପହଡ଼େ ଲାଗେ କ ଲାଗେ ।

ନରହର : ଚାଲ ଚାଲ, ତେବେ ଘରକୁ ଚାଲ । ପିଲାଏ ତେଣେ ଚାହିଁଥିବେ ମୋ ବାଟକୁ । କହିଦେବି—ବେଗେ ନାଆ ବନ୍ଧାଣକୁ ସଜିଲକରି ଏଇଠିକି ଆସିବେ ବାହାରି । ଆସ ।

(ଆଗରେ ନରହର—ପଛରେ ଶଙ୍କର ଚାଲିଗଲେ )

---

## ଦ୍ୱିତୀୟ ଦୃଶ୍ୟ—(ରାଜପଥ)

[କୀର୍ତ୍ତନ କରକର ଦଳେ ଲୋକ ପଥରେ ଆସୁଛନ୍ତି । ଆଗୁଆ ହୋଇ ତାଙ୍କ ସହିତ ଆସୁଛନ୍ତି ଶମ୍ଭୁ ]

—ଗୀତ—

ନୟନ-ସଙ୍ଗାଳି ମୋର ଉଠ ନୀଳମଣି,
ଉଠ, ମୁଖ ପଖାଳିବୁ ପାହିଲାଣି ରାତି । ୦ ।
ସାଙ୍ଗ-ସାଥୀ ଆସି ତୋର
ଦୁଆରେ ହେଲେଣି ମେଳ
ଖୁଆଇଦେବ ଲବଣୀ ରଖିଛନ୍ତି ସାଇତି । ୧ ।
ସଙ୍ଗେ ବଳରାମ ଭାଇ
ଯିବ ରେ କଳା କହ୍ନାଇଁ
ବଇଁଶୀ ବଜାଇ ବନେ ଥିବୁ ଖେଳେ ମାତି । ୨ ।

(କୀର୍ତ୍ତନଦଳ ଗାଇଗାଇ ଚାଲିଯିବାପରେ ଶମ୍ଭୁ ଫେର-ଆସିଲେ । ବିପରୀତ ଦିଗରୁ ଆସିଛନ୍ତି ନାରଣ)

ନାରଣ : (ଶମ୍ଭୁଙ୍କୁ ଦେଖି ନମସ୍କାର କରି) ନମସ୍କାର ଶମ୍ଭୁବାବୁ !

ଶମ୍ଭୁ : ଆରେ ନମସ୍କାର ନାରଣ ! ତୁମେ···

ନାରଣ : ଗାଧୋଇସାରି ବାହାରିବ ବୋଲି ଲୁଗା ପାଲଟି ପାଲଟି କୀର୍ତ୍ତନଦଳ ଗୃହଗଲେ ।

ଶମ୍ଭୁ : ହଁ, ସେମାନେ ଜଗନ୍ନାଥଗୁଡ଼, ସମଲେଇଗୁଡ଼ ଏମିତି କେତେ ଦାଣ୍ଡ-ଦେଉଳ ବୁଲି ଫେରିବେ ନା, ତେଣୁ ସହଳ-ସହଳ ବାହାରିପଡ଼ିଛନ୍ତି ।

ନାରଣ : ଆଗୁଆରେ ଦେଖିଥିଲି ତୁମକୁ । ତୁମେ ଫେରି-ଆସିଲ ଯେ ?

ଶମ୍ଭୁ : ନରହରି ଆଜି ବଣିଜପାଇଁ ତଳମାଳକୁ ଦି'ଖଣ୍ଡ ଡଙ୍ଗା ଛାଡୁଛନ୍ତି । ତାଙ୍କର ତ ଏଇଟା ହେଲା ପରମ୍ପରା ବେଉସା ! ତାଙ୍କ ବାପାଙ୍କର ସାତ ଆଠ ଖଣ୍ଡ ନାଆ ଚଳୁଥିଲା । ମଝିରେ ନଈରେ ପାଣି ଶୁଖିଗଲା ହେଲା—ବେଉସା-ବଣିଜ ବୁଡ଼ିଗଲା । ନରହରି ଏ ବର୍ଷ ପୁଣି ତାଙ୍କ ଘର ବେଉସା ଅନୁକୂଳ କରୁଛନ୍ତି ।

ନାରଣ : ଆଜି ?

ଶମ୍ଭୁ : ଆଜି କାର୍ତ୍ତିକ ପୂର୍ଣ୍ଣିମା । ବହୁ କାଳ ପୂର୍ବେ ଆମ ଦେଶର ସାଧବମାନେ ଏଇ ପୂର୍ଣ୍ଣିମା ଦିନ ବିଦେଶକୁ ନାଆରେ ବଣିଜ ଅନୁକୂଳ କରୁଥିଲେ । ତୁମେ ତ ପାଠୁଆ । କଳିଙ୍ଗ ନୌବାଣିଜ୍ୟ-କଥା କଅଣ ପଢ଼ି ନ ଥିବ ?

ନାରଣ : ହଁ, ସେକଥା ଆଉ କହିବାକୁ ଅଛି ? ଆମର ସାଧୁଏ ତ ଜାଭା, ବାଲି ପ୍ରଭୃତି ଦୂରଦୂରାନ୍ତକୁ ବୋଇତ ଚଳାଉ-ଥିଲେ । ସେ ପୂର୍ବଗୌରବ କଅଣ ପାଶୋରିବା କଥା !

ଶମ୍ଭୁ : ଅବଶ୍ୟ ଏତେ ଦୂରଦୁର୍ଗନ୍ତକୁ ଆଜି ନାଆ ଯାଉ ନାହିଁ । ତଥାପି, ନରହରି ତାଙ୍କ ବାପାଙ୍କ ଗାଦୀ ଧରିବାକୁ ବସିଛନ୍ତି । ଡାକିଛନ୍ତି, ମୋତେ ଏ ଶୁଭ ଅନୁକୂଳ ଉତ୍ସବରେ ଯୋଗ ଦେବାକୁ । ତୁମେ ଆସ । ସେ ତ ନରହରିଙ୍କ କଥା ନୁହେଁ, ଜାତିର କଥା—ଦେଶର ଗୌରବ ।

ନାରଣ : ନିଶ୍ଚୟ ! ଆଜି ସ୍ୱୀକାର କରୁଛି ଶମ୍ଭୁବାବୁ । ମଣିଷ ଅନେକ କଥା ବହୁତ ପଛରେ ବୁଝେ ।

ଶମ୍ଭୁ : (ନାରଣଙ୍କ ପିଠିରେ ହାତ ମାରି ହସି ) ଗୁଡ଼୍—ସେ-ଗୁଡ଼ାକ ଧରିବସିଲେ ଦୁନିଆଁ ଚଳିବ ନାହିଁ । ତୁମେ ତ ମତ ବଦଳାଇସାରିଛ ବୋଲି ଶୁଣିଲିଣି । ଆସ ଯିବା । ମୁଁ ନରହରିଙ୍କ ଘରଠିକି ବାହାରିଛି ।

ନାରଣ : ନାଇଁ, ତୁମେ ତାଙ୍କ ଘରକୁ ଯାଅ । ମୁଁ ମୋ ସ୍କୁଲ୍‌ର ଛାତ୍ରଙ୍କୁ ନେଇ ନଈକୂଳରେ ପହଞ୍ଚିବି । ଏ ଶୁଭ-ଅନୁକୂଳରେ ମୋର ବି କିଛି କର୍ତ୍ତବ୍ୟ ଅଛି । ମୁଁ ଆଉ କୀର୍ତ୍ତନକୁ ଯାଉ ନାହିଁ । ବସ୍ତି ଆଡ଼େ ବାହାରିଲି । ପିଲାଙ୍କୁ ଠିକାଠିକ କରି ନାଆପାଖେ ପହଞ୍ଚିବି ।

ଶମ୍ଭୁ : ( ହସି ) ହଁ, ସେ ସେ ପୁଅପଣିଆ ! ଆସ ।

(ଦୁହେଁ ଚାଲିଗଲେ)

=——

## ତୃତୀୟ ଦୃଶ୍ୟ—(କକ୍ଷ)

( ନରହରିଙ୍କ ଘର । ପୁରୁଣାକାଳିଆ ସାଜସଜ୍ଜା । ତଳେ ବସି ସ୍ନେହ ଫୁଲ ଗୁନ୍ଥୁ ଥିଲେ । ବାହାରେ ଶୁଭିଲା ମୋଟର ହର୍ଣ୍ଣ । ସ୍ନେହଙ୍କ ହାତ ବନ୍ଦ ହୋଇଗଲା । କାନେଇଦେଲେ ହର୍ଣ୍ଣ ଆଡ଼କୁ । ପୁଣି ହର୍ଣ୍ଣ ଶୁଭିଲା ଦୁଆରମୁହଁ ନିକଟରେ । ଅଧାଗୁନ୍ଥା ହାରଟି ହାତରେ ଧରିଛି—ସ୍ନେହ ଠିଆ ହୋଇପଡ଼ିଲେ । କେତେଗୁଡ଼ାଏ ଫୁଲ ଚୂର୍ଣ୍ଣ-ହୋଇଗଲା, ତେଣିକି ତାଙ୍କର ଲକ୍ଷ୍ୟ ନାହିଁ । ସେ ହଠାତ୍ ଡାକଲେ । )

ସ୍ନେହ : ଭାଇ !··· (କଥା ଖେଳିହୋଇଗଲା—ଘରଭିତରୁ ଚନ୍ଦନବୋଳା ଗିନାଟା ଧରି ନରହରିଙ୍କ ସ୍ତ୍ରୀ ଉମା ବାହାରିଆସିଲେ )

ଉମା : କାହାକୁ ? (ପୁଣି ହର୍ଣ୍ଣ ଶୁଭିଲା )

ଉମା : (ହସି) ଓ···ଘରେ ଛନଛନ—ବାହାରେ ମନ !

ସ୍ନେହ : (ହସି, ଫୁଲମାଳ ଉଞ୍ଚାଇ) ଛିଃ, ତୁମେ ନୁଆବୋହୂ··· ଭାଇ···

ଉମା : ଭାଇ···କଅଣ ?

ସ୍ନେହ : ଦୁଷ୍ଟ···

(ଏତିକିବେଳେ ଘରେ ପ୍ରବେଶ କଲେ ସତ୍ୟବାନ୍ )

ସତ୍ୟବାନ୍ : (ଆଶ୍ଚର୍ଯ୍ୟ ହୋଇ) ଦୁଷ୍ଟ ବୋଇଲେ···?

(ସ୍ନେହ ଲୁଚେଇଗଲେ)

ଉମା : (ହସିହସି ସ୍ନେହଙ୍କ ଆଡ଼କୁ ଠାର କହିଲେ) ପଗ୍ଳର, ପଗ୍ଳର···

ସ୍ନେହ— ଛିଃ, ତୁମେ··( ପଳାଇଗଲେ ଭିତରକୁ )

ଉମା : କଅଣ ? ଏ'ର ଦୁଷ୍ଟ ? (ନରହର ଏତିକବେଳେ ଘର-ଭିତରକୁ ପଶିଆସିଛନ୍ତି । ତାଙ୍କ କାନରେ ପଡ଼ିଛି ଦୁଷ୍ଟ ଶବ୍ଦଟା । ସେ ହସିହସି କହି-କହି ଆସିଛନ୍ତି ତେଣୁ)

ନରହର : ହଁ ହଁ, ଭରି ଦୁଷ୍ଟ ! ପହିଲା ନମ୍ବର ଦୁଷ୍ଟ !

ଶମ୍ଭୁ : (ସହସା ଆସି) କଏ ?

(ହସିହସି ଗ୍ଳଲିଗଲେ ଉମା ଘରଭିତରକୁ )

ନରହର : (ହସି ସତ୍ୟବାନ୍‌ଙ୍କୁ ଠାରି ଦେଖାଇ) ଏଇ ଭଦ୍ରଲୋକ ।

ଶମ୍ଭୁ : ଏଁ ?

ନରହର : ହଁ, ଦେଖୁନାହାନ୍ତି, ଏତେବେଳକୁ ଆସି ପହଞ୍ଚୁଛନ୍ତି ! ନାଆ ମଙ୍ଗୁଳା ହବ ଆଉ କେତେବେଳେ, କହିଲେ ?

ସତ୍ୟବାନ୍ : (ନିଜକୁ ଠାରି) ମୋତେ ଦେଖୁଚ ନା ? ଟିକଏ ଆଖି ଫିଟାଇ ଅନାଅଁ ।

ଶମ୍ଭୁ : ସତେ···ଏ କଅଣ ? ଧୂଳିମହଳ ! ଲୁଗାପଠାରେ କଳା ଦାଗ ?

ସତ୍ୟବାନ୍ :ଏଇସବୁ ଦେଖିସାରି ତୁମେ କହିବଟି ଶମ୍ଭୁବାବୁ, ମୁଁ ଦୁଷ୍ଟ ହେଲି କେମିତି ?

ନରହର : ସତରେ, ମୋର ତମ ଆଡ଼କୁ ନଜର ନ ଥିଲା । ତମ ଆସିବାରେ ମୁଁ ଆନନ୍ଦରେ କହିପକାଇଲି···

ଶମ୍ଭୁ : ହଉ ହଉ, ତମ ଶଳା-ଭଣୋଇ ଏଣ୍ଡ୍ କୋ: ଭିତରେ ତ କଥାଟା ହେଉଛି ? ଛାଡ଼ ! ବସ ଆଗେ, ଠିଆଠିଆରେ ଗୋଟେ···ଆସ ବସ । (ସତ୍ୟବନ୍‌କୁଂ ଟାଣି ବସାଇଲେ)

ନରହରି : କଅଣ ? ହେଉଛି କଅଣ ?

ସତ୍ୟବାନ୍ : ହବ ଆଉ କଅଣ ? କାଲି ସାରା ରାତି ଆଖିରେ ପଲକ ପଡ଼ ନାହିଁ । ସିମେଣ୍ଟ୍ କଳ ଗୋଟାଏ ବସୁଛି । ଶୁଣିଥିବ ତ ?

ନରହରି : ହଁ ଶୁଣିଛି । ଆଜ୍ଞା ତାଙ୍କର ବି ଅନୁକୂଳ ।

ସତ୍ୟବାନ୍ : ରାତିଟା ସାରା ସେଠି ରହିବା, ମେସିନ୍ ବସା, କଳ ସଜାଡ଼ି– ଏଇସବୁ ବେପାର । ତା'ପରେ ତ···

ଶମ୍ଭୁ : ଆରେ !

ନରହରି : ଯାଅ, ଆଗେ ଟିକଏ ଧୂଆଧୋଇ ହେଇ ଆସ । ଗଲି ।

ଶମ୍ଭୁ : ହଁ ହଁ, ଆଗେ ସେ କାମଟା ତୁଟାଇପକା ।

ସତ୍ୟବାନ୍ : ହଉ । (ଘରଭିତରକୁ ଗଲେ)

ନରହରି : ଏହେହେଁ କୁଆଡ଼େ ଗଲେ ? ସ୍ନେହ ! ସ୍ନେହ !

ସ୍ନେହ : (ସ୍ନେହ ଲାଜଲାଜ ହୋଇ ଘରୁ ଆସି ) କଅଣ ବାଇ !

ଶମ୍ଭୁ : ଆଲୋ ମାଆ ! ଗଲୁ ଟିକଏ ଆଗ ଚା'ପାଣି ବସେଇ-ଦେଲୁ । ରାତି ଅନିଦ୍ରା ହେଇ ସତ୍ୟବାନ୍‌ବାବୁ ଆସିଛନ୍ତି । (ସ୍ନେହ ଚାଲିଗଲା)

ନରହରି : ବପୁରା ରାତିଯାକ ଅନିଦ୍ରା ହୋଇ ତେବେବି ସକାଳୁ ଆସି ହାଜର ।

ଶମ୍ଭୁ : କାମର ଲୋକ ସେ ନରହରି ! ତମମାନଙ୍କ ଗୋଠରୁ ଫିଟି କେଡ଼େ କାମଟେ ନ କଲେ ?

ନେପଥ୍ୟରୁ : ଶମ୍ଭୁବାବୁ ଅଛନ୍ତି କି ?

ନରହର : କିଏ ଡାକୁଛି ଶମ୍ଭୁବାବୁ ?
ଶମ୍ଭୁ : (ଉଠି) ଦେଖିଆସେଁ । (ଚାଲିଗଲେ)
ନରହର : ସ୍ନେହ !
ସ୍ନେହ : (ଘରୁ) କଅଣ ବାପା ?
ନରହର : ତୋ ନୂଆବୋହୂଙ୍କୁ ଟିକିଏ ଡାକଦେଲୁ ।
ସ୍ନେହ : ସେ ଖଦାଶାଳେ କଅଣ କରୁଛନ୍ତି । ଡାକଦେବି ?
ନରହର : ନାଇଁ ନାଇଁ, ଥାଉ । (ଶମ୍ଭୁ ପ୍ରବେଶି) କିଏ କି ? କିଏ ଡାକୁଥିଲା ?
ଶମ୍ଭୁ : (ହସି) ନାଇଁ, ସେ ଆଉ ଗୋଟେ କଥା ! ପଛେ ଜାଣିବ । ହଉ, ମୋତେ ଟିକିଏ ଯିବାକୁ ହବ । ଜଣେ ଅପେକ୍ଷା କରିଛନ୍ତି, କାମ ଅଛି । ମୁଁ ନଈକୂଳକୁ ତ ଯିବି, ସେଇଠି ଭେଟହେବା ଉଙ୍ଗା-ବନ୍ଦାଣରେ ।
ନରହର : ହଉ ତେବେ । ମୁଁ ବି ଟିକିଏ ଘରଆଡ଼େ ଯାଏଁ, ଦେଖେଁ । ସତ୍ୟବାନ୍‌ଙ୍କ ଖବର ଟିକିଏ...
ଶମ୍ଭୁ : ହଁ ହଁ, ଏକଥା ଆଉ ପଚାରୁଛ ? ଯାଅ, ମୁଁ ଗଲି ତେବେ ?
ନରହର : ହଉ, ବେଗେ ଟିକିଏ ଯିବ ।
ଶମ୍ଭୁ : ମଟର ତ ଅଛି, ପିଲାଙ୍କୁ ନେଇ କରି ବାହାରିଯିବ ଏକାସାଙ୍ଗରେ ।
ନରହର : ନା, ଆମେ ଦହେଁ ଟିକିଏ ଆଗୁଆ ଯିବୁଁ । ତେଣେ ସବୁ ସଜାଡ଼ି କରିସାରିଲେ ଘରୁ ଏମାନେ ଯିବେ ।
ଶମ୍ଭୁ : ହଉ ।

(ଶମ୍ଭୁ ବାହାରକୁ ଓ ନରହର ଭିତରକୁ ଚାଲିଗଲେ )

---

## ଚତୁର୍ଥ ଦୃଶ୍ୟ - ( ପଥ )

[ ଶମ୍ଭୁ ଏବଂ ନାରଣ କଥାବାର୍ତ୍ତା ହୋଇ ଆସୁଛନ୍ତି ]

ନାରଣ : କଣ୍ଟୁ ପଗ୍ଭରିଲେ ସେ ?

ଶମ୍ଭୁ : ହଁ, କଏ ଡାକୁଛନ୍ତି ବୋଲି ପଗ୍ଭରିଲେ ।

ନାରଣ : ସେଇଠୁ ?

ଶମ୍ଭୁ : ( ହସି ) ମୁଁ ତମ ନାଆଁ କହିଲି ନାହିଁ । ଖାଲି କହିଲି— ଟିକିଏ କାମ ଅଛି, ଯିବ । ତଙ୍ଗା-ବନ୍ଧାଣବେଳକୁ ନଈକୂଳେ ଭେଟିବ ।

ନାରଣ : ଭଲ ହେଇଛି ।

( ଶଙ୍କର ଆସିଛି ସେଇବାଟେ, ଗୋଟିଏ ବୋଝରେ ଫଳଫୁଲ ନେଇ )

ଶମ୍ଭୁ : ଆରେ ? ଶଙ୍କର ! ତୁମେ କୁଆଡ଼େ ବାହାରିଛ ?

ଶଙ୍କର : ଆଜ ପରା ନୂଆ ସିଦ୍ଧିଠାଏ ହଉଛି ! ଆପଣ କଅଣ କଣ୍ଟୁ ଜାଣି ନାହାନ୍ତି ?

ଶମ୍ଭୁ : ଜାଣିଛି ଯେ··ନୂଆ ସିଦ୍ଧି ଆଉ କଅଣ ? ଥିଲି— ବୁଡ଼ିଯାଇଥିଲି—ପୁଣି ହଉଚି । କୁଅଉଥିଲା । ଦୁନିଆଁ ରେ ନୂଆ କଥା ଗୋଟେ କଅଣ ? ମୁଁ ବୁଝିପାରେ ନାହିଁ—

ସବୁ ଖାଲି ଗୁଡ଼ସୂତାରେ ମାଞ୍ଜା ବୋଳାହୁଛି । କଅଣ ନୂଆ ହୋଇ ସୂର୍ଯ୍ୟ ଉଇଁଛନ୍ତି ନା ଚନ୍ଦ୍ର ଉଇଁଛନ୍ତି ? ନୂଆ କରି ପବନ ବହୁଛି ? ସବୁ ସେଇ ପୁରୁଣା । ପୁରୁଣାରୁ ନୂଆର ଜନ୍ମ । କଓ ନାରଣ, କହୁନା କାହିଁକି ?

ନାରଣ : ହଁ, ପୁରୁଣାରୁ ତ ନୂଆର ଜନ୍ମ । ପୁରୁଣାକୁ ନ ମାନିଲେ ନୂଆ ଗଜୁରିବ କୋଉଠୁ ? ଆଜିର ନୂଆ ପୁଣି ପୁରୁଣା ହବ କାଲି । ବୁଝିଲଣି ସବୁ ।

ଶମ୍ଭୁ : ଏଇ ଏବେ ଶଙ୍କର କହିଲେ—ନୂଆସିଦ୍ଧି । ନୂଆ କେମିତି ? ଆମର ତ ସବୁ ଥିଲା । ବୋଇତ ଥିଲା, ବଣିକ ଥିଲା । ନ ଥିଲା କଅଣ ? ବରଂ କହ, ଆମେ ସେ ପୁରୁଣା ସିଦ୍ଧିର ପାଖରେ ପଡ଼ିବା ନାହିଁ ଏଇନାଗେ । କଅଣ ମିଛ ଏ କଥା ?

ନାରଣ : ମୋଟେ ନୁହେଁ । ବହୁତ ତ କଳାକାର ଶିଳ୍ପୀ ବଡ଼ବଡ଼ ନାଆଁ କରି ଏବେ ବାହାରୁଛନ୍ତି । ହେଲେ···ଆଉ ସେ କୋଣାର୍କ ଗଢ଼ୁଛି କିଏ, କହିଲ ?

ଶମ୍ଭୁ : ସେଇଆ କହିଲି ଶଙ୍କରକୁ । ନୂଆ ନୁହେଁ । ପାଗୋଡ଼ାଟାକୁ ଖାଲି ଦେଖାଇଦେବା କଥା । ଯାଅ ଯାଅ, ତୁମେ ଗଲେ ପୁଣି···

ଶଙ୍କର : ହଁ ଆଜ୍ଞା, ମଙ୍ଗ ଧିଆଧୋଇ—ନୂଆ-ସିନ୍ଦୂରଲଗି··· କେତେ କଥା ଅଛି । ନାଉରିଆମାନେ ଗାଧୋଇ-

ପାଧୋଇ ନୂଆ ଲୁଗା ପିନ୍ଧବେ । ସବୁ ବରାଦ କରି-
ଦେଇଛନ୍ତି ନରହରିବାବୁ—ବିଧିବିଧାନ ଅନୁସାରେ ।

ଶମ୍ଭୁ : ହଉ ହଉ, ଆସ ।

ଶଙ୍କର : ଆପଣ ଯିବେ ନାହିଁ କି ?

ଶମ୍ଭୁ : ମୁଁ ? ମୁଁ ପୁଣି ଯିବି ନାହିଁ ? ଯିବି ଯେ···ଟିକଏ ଆଉ
କାମ ଅଛି, ସାରିଦେଇ ଯାଉଛି ।

ଶଙ୍କର : ହଉ ତେବେ । ( ଚାଲିଗଲା )

ନାରଣ : ସେମାନେ ତ ଏଇନେ ବାହାରିଯିବେ । ମୁଁ ପିଲାଙ୍କୁ
ନେଇ ସେଇଠି ପହଞ୍ଚିବି ଠିକ୍ ବେଳକୁ । ତା'ଆଗରୁ
ଟିକଏ ଖାଲି ଥରଟେ···

ଶମ୍ଭୁ : ହଁ, ଚାଲ । ଦେଖିଦେବ ।

( ଦୁହେଁ ପ୍ରସ୍ଥାନ )



## ପଞ୍ଚମ ଦୃଶ୍ୟ—( ନଦୀକୂଳ )

[ ଡଙ୍ଗାମଙ୍ଗ ଧସ୍ତୁଛି—ଶଙ୍କର ମଙ୍ଗରେ ଚଢ଼ୁଆ ବୋଲୁଛି । ନାଉରିଆ କେତେ ଜଣ ଠିଆ ହୋଇ-ଛନ୍ତି—ଅଳ୍ପ ସମୟପରେ ଆସି ପହଞ୍ଚିଲେ ସତ୍ୟବାନ୍ ଓ ନରହରି । ନରହରି କିଛି ଦୂରରେ ଠିଆହୋଇଲେ ଡଙ୍ଗାକୁ ଚାହିଁ ]

ସତ୍ୟବାନ୍ : କାହିଁକି ଅଟକି ଗଲ ଭାଇ ?

ନରହରି : ଆଜ ତୁମେ ବୁଢ଼ା, ମୁଁ ବି ବୁଢ଼ା । ଅନେକ ଦିନର ପୁରୁଣା କଥା ମନେ ପଡ଼ୁଛି—ଏଇ ମହାନଦୀ, ଏଇ ଡଙ୍ଗା···ଆଜି ଯେବେ ତମ ବାପା କି ଆମ ବାପା ଥାଆନ୍ତେ···ଅବଶୋଷରେ ଧ୍ୱଂସମୁଖ ଗୁଳିଗଲେ । ( ଦୀର୍ଘନିଃଶ୍ୱାସ ପକାଇଲେ )

ସତ୍ୟବାନ୍ : ଏ ପାଣିକି ଦେଖି କେତେ ଆନନ୍ଦ ହେଉ ନ ଥାନ୍ତେ ସେମାନେ ?

ନରହରି : ସତ୍ୟବାନ୍, ଆଖି ଆଗରେ ଫୁଟିଉଠୁଛି ବାପାଙ୍କର··· (ଆଖି ଲୁହ ଛଳଛଳ ହୋଇଗଲା—କଥା କହି-ପାରିଲେ ନାହିଁ । )

ସତ୍ୟବାନ୍ : ଛି ଛି, ତୁମେ ଏମିତି ଦୁର୍ବଳ ହେଲେ ହବ ? ପୁଣି ନଈରେ ପାଣି ଆସିଲା । ପୁଣି ତମେ ନାଆ ମେଲିବ ।

ପୁଣି ବଣିକ-ବେଉସା ଚଳାଇବ । ବାପା ସ୍ୱର୍ଗରେ ଥାଇ ତମକୁ ଆଶୀର୍ବାଦ କରିବେ । ଦୁର୍ବଳ ହୁଅ ନାହିଁ ଭାଇ !
(ଉମା ଓ ସ୍ନେହ ବନ୍ଦାଣଥାଳ ଧରି ଆସିଲେ)

ନରହରି : ହଁ, ଯାଅ । ତମ କାମ ସାରି, ମଙ୍ଗଳା ମାଜଣା କର । ଶଙ୍କର ତ ଚୁଆସିନ୍ଦୂର ନାଗି କରୁଛୁ, ଯାଅ

ସ୍ନେହ : ତୁମେ ଦିହେଁ ଆସୁନା ?

ସତ୍ୟବାନ୍ : ଯାଉଛୁଁ, ଚାଲ । (ଦୁହେଁ ଆଗେଇଗଲେ)

ନରହରି : ( ଲୁହଭରା ଆଖି । କମ୍ପିତ କଣ୍ଠରେ କହିଲେ ) ଯେତେ ମନକୁ ବୁଝାଇଲେ···ଆଖି ଆଗରେ ବାପା ଦିଶିଯାଉଛନ୍ତି ।

ସତ୍ୟବାନ୍ : ସେ ଅଶରୀରୀରୂପରେ ତମକୁ କଲ୍ୟାଣ କରିବାକୁ ସ୍ୱର୍ଗରୁ ଆସିଛନ୍ତି ଭାଇ !

ନରହରି : (ପ୍ରଣାମ କରି ଗଦ୍‌ଗଦ କଣ୍ଠରେ) ବାପା···

ସତ୍ୟବାନ୍ : (ନରହରିଙ୍କ ଆଖିରୁ ଲୁହ ପୋଛିଦେଇ) ଛି ଭାଇ, ସେସବୁ ଭାବି ଫଳ କଅଣ ? ଆଉ ଥରେ ସେଇ ଦେହ ନେଇ ପୁଣି ଆସିବାର ହେଇଥିଲେ ପୃଥିବୀରେ ନୂତନତ୍ୱ ନ ଥା'ନ୍ତା । ଛାଡ଼, ହେଇଟି ଶମ୍ଭୁବାବୁ ଆସିଲେଣି ।

ଶମ୍ଭୁ : (ଶମ୍ଭୁ ପ୍ରବେଶ କରି ) କଅଣ ମୋ କଥା ପଡ଼ିଥିଲା ?

ସତ୍ୟବାନ୍ : ଆପଣଙ୍କ ଆସିବାରେ ଡେରି ଦେଖି···

ଶମ୍ଭୁ : ( ହସି ) ନାଇଁ, ଟିକିଏ କାମ ଥିଲା । ତୁଟେଇ ଦେଇ ଆସୁଛି । ତୁମେ ଦୁହେଁ ଏଠି ଠିଆହେଇରହିଛ ଯେ ?

ନରହରି : ସ୍ନେହହେଇକା ଗଲେ ନାଆବନ୍ଦାଣପାଇଁ, ଆମେ ଯାଉଛୁ ।

ଶମ୍ଭୁ : ପାଣିକ ଦେଖୁଛ ? କେମିତି ନାଆପାଖରେ ଲହଡ଼ା ଫେଙ୍ଗୁଛି ?

ସତ୍ୟବାନ୍ : ହଁ, ଦେଖନ୍ତୁ ଦେଖନ୍ତୁ, ହୀରାକୁଦ-ବନ୍ଧର ଫଳ ଏ୍ଁ। ପୁଣି ଏଇ ଥାନ ହୀରାଖଣ୍ଡ ପାଲଟିବ।

ଶମ୍ଭୁ : ସନ୍ଦେହ କଅଣ ?

ସତ୍ୟବାନ୍ : ଦୂରକୁ ଆଖି ନ ଦେଇ ସ୍ୱାର ବରୁଦ୍ଧରେ ତ ପୁଣି ନାନା ଅପପ୍ରଗ୍ଚର ଗ୍ଚଲଥିଲ ? ଆଉ ଆଜ ?

( ଘଣ୍ଟ-ଘଣ୍ଟା ବାଜିଲା—ବନ୍ଦାଣ ହେଲା )

ନରହର : ମୁଁ ତ ସେଥିଭିତରୁ ଜଣେ ପ୍ରଥମ ଶ୍ରେଣୀର ଦୋଷୀ।

ସତ୍ୟବାନ୍ : ତୁମେ ନୁହ ଯେ, ପର ବୁଦ୍ଧି ତୁମକୁ ଠିକଏ ଅଣବାଟିଆ କରେଇଦେଇଥିଲା।

ନରହର : ହଁ ହଁ, ନାରଣ···ନାରଣ ! ଏଇନେ ସ୍କୁଲ୍ ମାଷ୍ଟର୍ ସେଇ ନାରଣ। (ନାରଣ ଓ କେତେ ଜଣ ଯୁବକ, ବାଳକ-ବାଳିକା ପ୍ରବେଶ କଲେ।)

ସତ୍ୟବ ନ୍ : ଆରେ ? ନାଆଁ ପଡ଼ୁପଡ଼ୁ···

ଶମ୍ଭୁ : ହଁ, ଆସି ପହଞ୍ଚିଗଲେ।

ନାରଣ : ହଁ ମୁଁ ଆସିଛି, ବାକ ସେ ନାରଣ ନୁହେଁ। ସେ ଭୁଲ୍‌ଠା ବୁଝିପାରଛି। ଆସିଛି ଏଇ ମାଆ ମହାନଦୀ ଆଗରେ ମୋ ଦୋଷ ମାନିବାକୁ, ତମମାନଙ୍କୁ କ୍ଷମା ମାଗିବାକୁ। ଗ୍ଚଲ, ନାଆପାଖକୁ ଗ୍ଚଲ। ବନ୍ଦାଣରେ ଯୋଗଦେବା।

( ସମସ୍ତେ ନାଆ ପାଖକୁ ଯାଇ ହାତଯୋଡ଼ି ଠିଆହେଲେ। ଧୂପ, ଦୀପ, ଫୁଲ ଦେଇ ବନ୍ଦାଣ କଲେ—ନଡ଼ିଆ ଭଙ୍ଗା ହେଲା। ସବୁଥିରେ ଆଗଭର ହୋଇ କାମ କଲେ ଶଙ୍କର। ଜଣେ ନାଉରିଆ ଖଣ୍ଡେ ସମ୍ବଲପୁରୀ ପାଟ···

ପଟଣି ଓ ଧଣ୍ଡା ଥାଳରେ ଆଣି ନରହରଙ୍କ ପାଖରେ ଉପସ୍ଥିତ ହୋଇ ଡାକଲେ ଶଙ୍କରକୁ )

ନାଉରୀ : ଶଙ୍କର୍‌ଇ ! ଆ, ଯୁଆଡ଼କୁ ଆ । ତୁ ତ ପାଟମଙ୍ଗୁଆଳ, ଆ, ମାଆଙ୍କ ଶିରେପା-ଧଣ୍ଡା ନେ । ( ନରହରଙ୍କୁ ପଟଣି ଓ ଧଣ୍ଡା ବଢ଼ାଇଦେଲେ । ଶଙ୍କର ଆସିଲା । ନରହର ତା ମୁଣ୍ଡରେ ଶିରେପା ଭିଡ଼ିଦେଲେ । ଫୁଲମାଳ ଗଳାରେ ଗଳାଇଦେଲେ । ଶଙ୍ଖ-ହୁଳହୁଳି ଶୁଭୁଥାଏ ; ନରହରଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା—ସେ ଲୁହ ଆଖିରେ ପ୍ରଣାମ କଲେ । ଶଙ୍କର ନାଆକୁ ଯାଇ ପ୍ରଥମେ କାତ ମାଇଲା )

ସତ୍ୟବାନ୍ : ଛି ଭାଇ ! ( ଲୁହ ପୋଛିଦେଲେ ନରହରଙ୍କର ) ପୁଣି ସେଇ ପୁରୁଣା କଥା ?

ନାରଣ : ସତ୍ୟବାନ୍‌ବାବୁ ! ପୁରୁଣା କଥା ମନେ ନ କଲେ କେନ୍ତୁ ଆମେ ମଣିଷଭଳେ ଗଣତି ହେଇପାରିବା ନାହିଁ । ଆଜ ସେଇ ପୁରୁଣା କଥାକୁ ଟିକିଏ ଚେତାଇଦେବାକୁ ଆସିଲି ମୁଁ । ( ନାଆଉପରେ ଶଙ୍କର କାତ ମାରିଲା । ଶଙ୍ଖଧ୍ୱନି ଶୁଭିଲା )

ନାରଣ : ଜୟ ହେ ମାଆ ସମଲେଶ୍ୱରୀ !

ଶମ୍ଭୁ : ଜୟ ମା ଉତ୍କଳ ଜନନୀ—ଜୟ ଜଗନ୍ନାଥ !

ସମସ୍ତେ : ଜୟ ମାଆ ସମଲେଶ୍ୱରୀ—ଜୟ ଜଗନ୍ନାଥ !

( ନାଉରିଆମାନେ ଇତିମଧ୍ୟରେ ନାଆଭିତରକୁ ଗଲେ । ନାଆ ଚାଳିଲା । ନାରଣ ତାଙ୍କ ଦଳକୁ ହାତ ଠାରି-ଦେଲେ । ସମବେତ କଣ୍ଠରେ ଗୀତ ଶୁଣାଗଲା )

( ଗୀତ )

ଏ ଥର ମାଟି ଢୋଲଉପରେ ଦେ’ ଫଡ଼କା ରସି,
ସାଧବ-ପୁଅ କଲ୍ଣି ବଜେ ଗୁମଦାରରେ ଆସି । ୦ ।
ପେରଗ୍ଲୁ ଧଣ ମିର୍ଦ୍ଧା ଡାକେ,
ଖୋଳ ବୋଝେଇସାରିଲେ ଲୋକେ ।
ଯିବା ପର ଏ ମଉସୁମୀରେ ଫଲ୍ସା ପେଣ୍ଟୁମୁହେଁ,
( ଖାଲି ) ତଣ୍ଡେଲ୍ ଡୁଣ୍ଡେ ଆରିଆ ଝାଳ ମାଲ୍ଦା ଧାଇ ଗୁହେଁ ।
ଘାଗଡ଼୍ ଗୋଠା ଅଖାଲ ଉଠା, ମା’ ମଙ୍ଗଳା ଘୋଷି,
ଢଉଁ-ମାଜଣା ସାଂରିଦେ’ ନନା, ସଫର୍ ତଟେଡ଼ ବସି । ୧ ।
ଶଙ୍କର : ଦରିଆ ପୀର୍—ଲାଗେ ଶିର୍
ଜୋଆନ୍ ଜବ୍ବର୍—କାମେଇ ଖବର୍
ପୀର କରାମତ୍—ସାହେବ ସଲାମତ୍ ।
ସମସ୍ତେ : ଯାଆ ଗଡ଼ ଯା’ ଗୋବ୍ରପ୍ ଏଇ ଶୁଭଲଗନେ ଆଜ,
ସାଧବାଣୀକ କହ୍ନିଯାଇଛ୍ଥୁ ନାହାକ ଗଣି ପାଞ୍ଜି ।
ଝାଞ୍ଜିଦେଇଥା’ ଖଲାସୀ ଭାଇ ସଫର୍ ଦସ୍ତି ରଶି,
ବଡାଲି ଆଣ୍ଟେ ବାନ୍ଧିଦେଇଥା’ ଯିବଟି କାଳେ ଖସି । ୨ ।
ଶଙ୍କର : ଦେ’ ନାବର ଦଉଡ଼ ଟାଣି
କାଛୁ ସାଇତି ଥୁଅ ରେ ଆଣି ।
ସମସ୍ତେ : ଶେଉ଼ ଗୁଡ଼ାଇ, କଳମୀ ଡୋର ଆଟେଡ଼ଇ ରଖ ଭାଇ,
ହେରିଆ ଖେଳ ଗୋବ୍ରପ୍ ଗଡ଼େ ସମ୍ଭାଳ ମାଝି ଭାଇ ।
ଦେ’ରେ ତଣ୍ଡେଲ୍ ଶୁକାନୀ ମୋଡ଼ ନାଳିଆ ଚୌଡ଼ ବେଶୀ,
ବେଳ ଚଳୁଛ୍ଥୁ ବସ୍ଥା ଗୁହାଁ ହୁରବନ୍ଦକୁ କଷି । ୩ ।
ଶଙ୍କର : ମୁହାଣମୁଣ୍ଡେ ଲଙ୍ଗର ଦବା,
ଭେଗ ମନାସି ହକାରି ଯିବା ।

ସମସ୍ତେ : ବାହା ହୁଡ଼ଲେ ଦଶଆମୁହେଁ ଗାମଦ ହେବ ପର,
ଜଗି ଗଡ଼ାଅ ଗୋବାପ୍ ମାଟି, ମୁଣ୍ଡରେ ତୋ'ର ଭର ।
ରାତି ଅନ୍ଧାରେ ଉତ୍ତରପଟେ ଧୋବତାବକୁ କଷି,
ଶେଷରାତିଆ ପୋଆ ଚାରକୁ ଅନାଇଁ ଯା ହସି । ୪ ।

ଶଙ୍କର : ବାହୁଟିଆ କୁନ୍ଦାମୁଣ୍ଡେ । ଧଣ୍ଡାମାଳ ଲଟ୍‌କା ଗୁଣ୍ଡେ
ଫଲ୍‌ସାପେଣ୍ଟ ହାଣ୍ଡୁ ବାହାର୍
ନକଟେଇଲ୍—ପାଗଡ଼ ଧର୍

ସମସ୍ତେ : ପଡ଼ିଆଣି ଏ ଜୁଆରବେଳ ଗୁଦରୁ ଡାକେ ମାଟି,
ନଙ୍ଗର୍ କର୍ ମାଆ ମଙ୍ଗଳା; ସମ୍ଭାଳଦେଲ୍ ଆଜ,
ବାହୁଡ଼ାଣିକ ଶୁଭରେ ଗଲେ, ଚୁଆ-ଚନ୍ଦନ ଘଷି,
ଲଆ ଓଖର ସହଣି ଦେବ ଶୁକାମା ମୁଣ୍ଡେ ବସି । ୫ ।

(ଦୁଇ ଦଳ ଗାଇବେ)

| ଶଙ୍କର | ସମସ୍ତେ |
|---|---|
| ହେଇଁ···ହୋ | ଦଶଆ ପୀର୍ |
| ହେଇଁ···ଆ | ଏଁ ଏଁ ସ୍ସା |
| ହା' ବସ୍ | ଲଗେ ଶୀର୍ |
| ଯା' ହାବସ୍ | ଏଁ ଏଁ ସ୍ସା' |
| ହେଇଁ···ଓ | ପୀର୍ କରମତ୍ |
| ହେଇଁ···ହାବସ୍ | ଏଁ ଏଁ ସ୍ସା' |

ସମସ୍ତେ : ହା' ବସ୍ — ଜୁଆନ୍ ଜବର୍
ହା ବସ୍ — କାମେ ଖବର୍

(ଘଣ୍ଟ-ଘଣ୍ଟା ବାଜିଉଠିଲା ।)

ସମବେତ କଣ୍ଠରୁ : ଜୟ ମାଆ ସମଲାଇ !

(ସମସ୍ତେ ପ୍ରଣାମ କଲେ ।)

**ପ ଟ୍ଟ ପ ତ ନ**